# ରେଖା ଓ ରଂଗରେ ଚଉତିଶା
# REKHA O RANGARE CHAUTISHA




ସମ୍ପାଦନା
ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ
ଡକ୍ଟର ଭାଗ୍ୟଲିପି ମଲ୍ଲ
ଗୌରାଙ୍ଗ ଚରଣ ଦାଶ



ଓଡ଼ିଶା ରାଜ୍ୟ ସଂଗ୍ରହାଳୟ
ORISSA STATE MUSEUM

**Rekha O Rangare Chautisha**

A collection of Four painted palmleaf manuscripts.

**Edited by**
Sudarsan Acharya
Bhagyalipi Malla
Gouranga Charana Dash

**Published by**
Odisha State Museum
Bhubaneswar

**Printed at**
Printech Offset (P) Ltd.
Bhubaneswar, Odisha

**Layout**
Ramakanta Samantray

**Year of Publication 2015**

**Price :**

ରେଖା ଓ ରଂଗରେ ଚଉତିଶା

ସମ୍ପାଦନା
ସୁଦର୍ଶନ ଆଚାର୍ଯ୍ୟ
ଭାଗ୍ୟଲିପି ମଲ୍ଲ
ଗୌରାଙ୍ଗ ଚରଣ ଦାଶ

ପ୍ରକାଶକ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର

ମୁଦ୍ରଣ
ପ୍ରିଣ୍ଟଟେକ୍ ଅଫ୍‌ସେଟ୍ (ପ୍ରା) ଲିଃ
ଭୁବନେଶ୍ୱର

ଅଳଂକରଣ
ରମାକାନ୍ତ ସାମନ୍ତରାୟ

ପ୍ରକାଶନ ବର୍ଷ ୨୦୧୫

ମୂଲ୍ୟ

# ସୂଚିପତ୍ର





# ଅବତରଣିକା

ଏକ

ମଧ୍ୟକାଳୀନ ଓଡ଼ିଆ ସୃଜନ ପରଂପରାରେ, ଉଭୟ ଭାବଗତ ଓ ଗଢ଼ଣ ରୀତିରେ ବହୁ ପ୍ରାରୂପ, ଯଥା - ପୁରାଣ, କାବ୍ୟ, ଭଜନ, ଜଣାଣ, ଟୀକା, ସଂହିତା, ମାଳିକା, ପଟଳ, ଓଗାଳ, ପୋଇ, ଚୁମ୍ପା, ଚିଟାଉ, କୋଇଲି ଇତ୍ୟାଦି ରହିଛି । ସେଗୁଡ଼ିକ ମଧ୍ୟରେ ଚଉତିଶା ଅଧିକ ଲୋକପ୍ରିୟ ଓ ସଂଖ୍ୟାରେ ପଂଚଶତାଧିକ । ଏତେ ଲୋକପ୍ରିୟ ଯେ, ଚଉତିଶାଟିଏ ନ ଲେଖିଲେ କବିତ୍ୱ ଅପୂର୍ଣ୍ଣ ରହିଯାଏ ବୋଲି କବିମାନେ ଅନୁଭବ କରିଛନ୍ତି । ପରବର୍ତ୍ତୀ କାଳରେ କେତେକ ଲିପିକାର ଚଉତିଶାମାନ ସଂଗ୍ରହକରି ସେଗୁଡ଼ିକୁ ସ୍ୱତନ୍ତ୍ର ପୋଥିରେ ସଂକଳନ କରିଛନ୍ତି । ଏହି ପ୍ରକାରର ବହୁ ପୋଥି ରାଜ୍ୟ ସଂଗ୍ରହାଳୟ, ଉତ୍କଳ ବିଶ୍ୱବିଦ୍ୟାଳୟ ପାଠାଗାର ଓ ଯଦୁମଣି ପାଠାଗାର (ଉଦୟପୁର, ନୟାଗଡ଼)ରେ ସୁରକ୍ଷିତ ରହିଛି । ଚଉତିଶାର ଲୋକପ୍ରିୟତାକୁ ଅନୁଭବ କରି, ଊନବିଂଶ ଶତାବ୍ଦୀରେ ସାହିତ୍ୟ-କର୍ମୀମାନେ ଏଗୁଡ଼ିକର ପ୍ରକାଶନ ଓ ପ୍ରସାରଣରେ ମୁଦ୍ରାଯନ୍ତ୍ରର ସାହାଯ୍ୟ ନେଇଛନ୍ତି । ବହୁ ଚଉତିଶା ପାଠ୍ୟକ୍ରମରେ ସ୍ଥାନପାଇଛି । ବିଂଶ ଶତାବ୍ଦୀରେ ଯେଉଁମାନେ ଚଉତିଶା ସଂଗ୍ରହ ଓ ସଂପାଦନାରେ ନେତୃତ୍ୱ ନେଇଛନ୍ତି ସେମାନଙ୍କ ମଧ୍ୟରେ ଆର୍ତ୍ତବଲ୍ଲଭ ମହାନ୍ତି, ନୀଳମଣି ମିଶ୍ର, କୁଞ୍ଜବିହାରୀ ଦାଶ ଓ ସଚ୍ଚିଦାନନ୍ଦ ମିଶ୍ର ପ୍ରମୁଖଙ୍କ ନାମ ସ୍ମରଣୀୟ ।[୧]

ପ୍ରସ୍ତୁତ ଗ୍ରନ୍ଥ, ଶତାଧିକ ଚଉତିଶା ମଧ୍ୟରୁ ମାତ୍ର ୪ଗୋଟିର ସଂକଳନ । ସେଗୁଡ଼ିକ ରୁକ୍ମିଣୀ ଚଉତିଶା (ନନ୍ଦାବାଈ), ଆର୍ତ୍ତତ୍ରାଣ ଚଉତିଶା (ଦୀନକୃଷ୍ଣ ଦାସ), କୁମୁଦକାନ୍ତ ଚଉତିଶା (ନାରାୟଣ ଦାସ) ଏବଂ ଜଣାଣ ଚଉତିଶା (ନରେନ୍ଦ୍ରାନୁଜ) । କାରଣ, ଏହି ଚାରିଗୋଟି ଅକ୍ଷର -କର୍ମକୁ ପରବର୍ତ୍ତୀ କାଳରେ ରେଖା ଓ ରଂଗ-କର୍ମରେ ରୂପାନ୍ତରିତ କରାଯାଇଛି, ଅର୍ଥାତ୍ ତାଳପତ୍ର ପୃଷ୍ଠରେ ବର୍ଣ୍ଣିତ କଥାର ଘଟଣା ଓ ଭାବ ଅନୁସାରେ ଚିତ୍ରମାନ ଅଙ୍କାଯାଇଛି । ଏଗୁଡ଼ିକ ପୋଥିଚିତ୍ର ଓ ଓଡ଼ିଆ ସୃଜନ ପରଂପରାର ଅନ୍ୟତମ ପରିଚିତି । ସେଥିପାଇଁ ବହିର ନାମ ରଖାଯାଇଛି "ରେଖା ଓ ରଂଗରେ ଚଉତିଶା" । ଏହି ପୋଥିଗୁଡ଼ିକ ଓଡ଼ିଶା ରାଜ୍ୟସଂଗ୍ରହାଳୟରେ ସୁରକ୍ଷିତ ରହିଛି ।[୨]

ବହି ସଂପାଦନା କାଳରେ ଚିତ୍ରପୋଥିଗୁଡ଼ିକ ସହିତ ପୂର୍ବରୁ ମୁଦ୍ରିତ ଗ୍ରନ୍ଥଗୁଡ଼ିକ ମଧ୍ୟରୁ ମୁଖ୍ୟତଃ କୁଞ୍ଜବିହାରୀ ଦାଶ ଓ ନୀଳମଣି ମିଶ୍ର ସଂକଳନରୁ ପାଠାନ୍ତରଗୁଡ଼ିକ ଗ୍ରହଣ କରାଯାଇଛି । କାରଣ ଏହି ପୋଥିଗୁଡ଼ିକ ରାଜ୍ୟ ସଂଗ୍ରହାଳୟରେ ହିଁ ସୁରକ୍ଷିତ । ସଂକଳିତ ସୃଷ୍ଟିଗୁଡ଼ିକ ରଚନାର କାଳକ୍ରମ ଅନୁସାରେ ସଂଯୋଜିତ । ରୁକ୍ମିଣୀ ଚଉତିଶା ପୋଥି ସବୁଠାରୁ ପୁରୁଣା, ବୟସ ଆନୁମାନିକ ୩୦୦ ବର୍ଷରୁ ଅଧିକ । ଫଳତଃ, ଏହାର ବହୁ ପତ୍ର ପୋକଖିଆ ଏବଂ କେତେକ ପତ୍ର ଅଲଭ୍ୟ । ଏ଼ହା ଅଠଷଠି ପଦ ବିଶିଷ୍ଟ । ପ୍ରଥମ ୩୪ଟି ପଦ 'କ' ଠାରୁ 'କ୍ଷ' ଓ ଦ୍ୱିତୀୟ ୩୪ ପଦ 'କ୍ଷ' ଠାରୁ 'କ' (ଓଲଟ ଚଉତିଶା) କ୍ରମରେ ଲିଖିତ । ପ୍ରଥମ ଭାଗର ଠ, ଡ, ଢ଼, ଣ ଓ ବ (୫ ପଦ) ଦ୍ୱିତୀୟ ଭାଗରେ କ, ଛ, ଳ, ଶ, ଷ, ସ, ହ ଓ 'କ୍ଷ' (୮ ପଦ) ମିଳୁ ନାହିଁ । ଏବଂ, କେତେକ ପଦ (ଟ, ତ : ପ୍ରଥମ ଭାଗ ଏବଂ କ, ଗ, ଘ : ଦ୍ୱିତୀୟ ଭାଗ) ଆଂଶିକ ରହିଛି । ଏହାର ପୋଥି ଅନ୍ୟତ୍ର ଦୁର୍ଲ୍ଲଭ ଏବଂ ଏଯାବତ୍ ଅମୁଦ୍ରିତ । ତେଣୁ ଏହାର ସଂପୂର୍ଣ୍ଣୀକରଣ ସମ୍ଭବ ହେଉନାହିଁ । ବିଦଗ୍ଧ ପାଠକେ ଆମ ଅସହାୟତାକୁ ଅନୁଭବ କରିବେ ବୋଲି ଆଶା ।

ଚାରୋଟି ଚଉତିଶା ମଧ୍ୟରୁ ରୁକ୍ମିଣୀ ଚଉତିଶା (ସଂଗ୍ରହାଳୟ ପୋଥି ସଂଖ୍ୟା (Ext. - 324) ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହା ଭୁବନେଶ୍ୱରରୁ ସଂଗୃହୀତ । ଏହାର ଆକାର ୩୩ x ୩.୫ସେ.ମି. ବିଶିଷ୍ଟ, ୨୬ଟି ପତ୍ର ରହିଛି । ପ୍ରତ୍ୟେକ ପତ୍ରରେ ୬ଟି ପଂକ୍ତି; କେତୋଟିରେ କେବଳ ଚିତ୍ର ଥିବାବେଳେ ଅନ୍ୟ କେତୋଟିରେ ପତ୍ରଗୁଡ଼ିକର ଉଭୟ ପାର୍ଶ୍ୱରେ ଚିତ୍ର ମଧ୍ୟରେ ପାଠ ଏବଂ ଅନ୍ୟ କେତୋଟିରେ ଗୋଟିଏ ପାର୍ଶ୍ୱରେ ଚିତ୍ର ଏବଂ ଅନ୍ୟ ପାର୍ଶ୍ୱରେ ପାଠ ଲେଖାଯାଇଛି । ମଝିରୁ କେତୋଟି ପତ୍ର ନଥିବାଯୋଗୁଁ ଚଉତିଶାର ସଂପୂର୍ଣ୍ଣ ରୂପ ଉପଲବ୍ଧ ନୁହେଁ । ପତ୍ରଗୁଡ଼ିକର ଅବସ୍ଥା ମଧ୍ୟ ସେତେ ଭଲ ନୁହେଁ । ଅକ୍ଷରଗୁଡ଼ିକରୁ ମନେହୁଏ, ପୋଥିଟିର ପ୍ରସ୍ତୁତି ସମୟ ପ୍ରାଚୀନ । ଛ ସ୍ଥାନରେ ସର୍ବତ୍ର କ୍ଷ ବ୍ୟବହୃତ ; ଜ, କ, ହୁ, ଇ, ନ୍ତ, ଞ୍ଚ, ଶ୍ରୀ, ହ ଇତ୍ୟାଦି ଅକ୍ଷର ପ୍ରଚଳିତ ଅକ୍ଷରଠାରୁ ସଂପୂର୍ଣ୍ଣ ଭିନ୍ନ, ଅନୁସ୍ୱାରଗୁଡ଼ିକ ପରବର୍ତ୍ତୀ ବର୍ଣ୍ଣ ପରେ ପ୍ରାୟ ଦେଖିବାକୁ ମିଳେ, ଯଥା- ଖେଳତାଂ, ଅଗେଂ, ମାହୁନ୍ତଂ, ଜରାସଧଂ, ତୁମ୍ଭକୁଂ ଇତ୍ୟାଦି । ଅନେକ ସ୍ଥଳରେ ଅଯଥା ଅନୁସ୍ୱାରର ପ୍ରୟୋଗ ଦେଖିବାକୁ ମିଳେ, ଯଥା - ବୋଲଇଂ, କରଇଂ, ହୁଅନ୍ତାଂ, ହୁଇଂ, ଭାଇଂ ଇତ୍ୟାଦି । ସେହିପରି ମୈଧ୍ୟୁ (ମଧ୍ୟୁ) ସିଙ୍ଘ (ସିଂହ) ବିନୋଇ, ଜଗନାଥ, ଦୋହିତା (ଦୁହିତା), ବେବସ୍ତା, ତଡ଼ତି (ଶୀଘ୍ର) କହିବଇ, ଦ୍ୱାରେକା (ଦ୍ୱାରିକା) ଜନି (ଜନ୍ମ), ଠଣା, (ସ୍ଥାନ), ଝେଝକା, ଝାଡିକା (ଶୀଘ୍ର), ତୁସ୍ତି (ସ୍ତୁତି), ଭୀସ୍ମଙ୍କ (ଭୀଷ୍ମକ), ଦୃଢ଼ (ଦୃଢ଼), ଭଇଣି (ଭଗିନି), ନୋହସି, ଗୋଷାଣି (ଗୋଷାମଣି, ଠାକୁରାଣୀ) ପରି ବହୁ ପ୍ରାଚୀନ ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ । ଉପର୍ଯୁକ୍ତ ଦୃଷ୍ଟାନ୍ତରୁ ପୋଥି ଏବଂ ଚିତ୍ରଗୁଡ଼ିକର ପ୍ରାଚୀନତା କଳନା କରାଯାଇପାରେ । ଲିପି ଦୃଷ୍ଟିରୁ ଏହାର ସମୟ ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧ ବୋଲି ନିର୍ଣ୍ଣୟ କରାଯାଇପାରିବ ।

ରୁକ୍ମିଣୀ ଚଉତିଶାର ରଚୟିତା ନିଜକୁ ନନ୍ଦା ବୋଲି ପରିଚିତ କରାଇଛନ୍ତି । ତାଙ୍କ ନାମରେ ଅନ୍ୟ ଯେଉଁ ଚଉତିଶାଟି ମିଳେ, ସେଥିରେ ନନ୍ଦା ବାଈ ଉଲ୍ଲେଖ ଥିବାରୁ ଏହା ଜଣେ ନାରୀ କବିଙ୍କଦ୍ୱାରା ରଚିତ ବୋଲି କହିବା ସମୀଚୀନ । କୃଷ୍ଣଚରଣ ସାହୁ, ନନ୍ଦା ବାଈଙ୍କ ସମୟ ଅଷ୍ଟାଦଶ ଶତାବ୍ଦୀ ବୋଲି ନିର୍ଣ୍ଣୟ କରିଛନ୍ତି ।[୩] କିନ୍ତୁ ଭାଷା, ଛନ୍ଦ ଓ ବିଷୟବସ୍ତୁ ଦୃଷ୍ଟିରୁ ରଚୟିତ୍ରୀଙ୍କ ସମୟ ସପ୍ତଦଶ ଶତାବ୍ଦୀର ଆଦ୍ୟ ହେବା ଅଧିକ ଯୁକ୍ତିଯୁକ୍ତ । ଚଉତିଶାର ବିଷୟବସ୍ତୁ ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କ ବିବାହ ଆଧାରିତ । ଚୈତନ୍ୟଙ୍କ ପରେ ରାଧାକୃଷ୍ଣ ଉପାସନାର ପ୍ରାବଲ୍ୟ ମଧ୍ୟରେ ଦୀର୍ଘ ସମୟ ଧରି ଶ୍ରୀକୃଷ୍ଣ ଲୀଳାରେ ରୁକ୍ମିଣୀ ଗୌଣ ହୋଇପଡ଼ିଛନ୍ତି । ମଧ୍ୟଯୁଗୀୟ କବିମାନେ, ବିଶେଷ କରି ଉପେନ୍ଦ୍ରୋତ୍ତର କବିମାନେ ରାଧାକୃଷ୍ଣ ପ୍ରଣୟ ଲୀଳାକୁ ହିଁ ନିଜ ନିଜ କାବ୍ୟର ଉପଜୀବ୍ୟ କରିଛନ୍ତି । ଶ୍ରୀକୃଷ୍ଣଙ୍କ ବ୍ରଜଲୀଳା ଓ ମଥୁରା ଲୀଳା ଭିତରେ ଶ୍ରୀ ରାଧା ହୋଇଉଠିଛନ୍ତି କାବ୍ୟନାୟିକା; ଦ୍ୱାରକାଲୀଳା କବିମାନଙ୍କ ପାଇଁ ଅପାଂକ୍ତେୟ ହୋଇପଡ଼ିଛି । ପରକୀୟା ପ୍ରେମ ଉଲ୍ଲାସରେ ସେମାନେ ବିଭୋର । ଷୋଡ଼ଶ ଶତାବ୍ଦୀର ଶେଷଭାଗ ବା ରୁକ୍ମିଣୀ ବିଭାର କବି କାର୍ତ୍ତିକ ଦାସଙ୍କଠାରୁ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରର ରଚୟିତା ଯଦୁମଣିଙ୍କ ପର୍ଯ୍ୟନ୍ତ ରୁକ୍ମିଣୀ ଓଡ଼ିଆ ସାହିତ୍ୟରୁ ପ୍ରାୟ ନିର୍ବାସିତା କହିଲେ ଅଯଥାର୍ଥ ହେବ ନାହିଁ ।[୪] ଏହାର କାହାଣୀ ଅତ୍ୟନ୍ତ ସରଳ । ମାତ୍ର ଲଳିତ ଭାଷା, ବିଷୟ ନିର୍ବାଚନ, ଭାଷାର ଭାବାନୁସାରି ଓ ସାବଲୀଳ ପ୍ରୟୋଗ ପାଠକର ଚେତନାକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସୃଜନ-ରସରେ ସମାହିତ କରି ରଖେ । ସେ ଅଟକି ଯାଉନି, ନିଜେ କାହାଣୀ ଓ ଭାବ (ଆସକ୍ତି, ସ୍ୱପ୍ନ, ଅହଙ୍କାର, ପ୍ରତାରଣା, ଉଦ୍‌ବେଗ, ମାନସିକଦ୍ୱନ୍ଦ୍ୱ, ଉତ୍କଣ୍ଠା ଓ ସମ୍ମିଳନ) ସହିତ ଏକ ହୋଇଯାଉଛି । ଏହା ଅବଶ୍ୟ ଏକ ପ୍ରେମକାବ୍ୟ, ମାତ୍ର ଅନ୍ୟ ବହୁ ମଧ୍ୟଯୁଗୀୟ ପ୍ରେମକାବ୍ୟ ପରି ଏଥିରେ ନାରୀର ରୂପ ଓ ମାନସିକ ଅବସ୍ଥା ବର୍ଣ୍ଣନାରେ ସାମାନ୍ୟ ଉଲଙ୍ଗତା ପ୍ରକାଶ ପାଇନାହିଁ । ଚଉତିଶାର ଗୋଟିଏ ପଦରେ ବ୍ରାହ୍ମଣଙ୍କ ହାତକୁ ମୁଦା ଲେଖଟିଏ ବଢ଼େଇ ଦେଲାବେଳେ ରୁକ୍ମିଣୀ କହୁଛନ୍ତି, ଏହା ଲେଖ ନୁହେଁ-ସ୍ୱୟଂ ରୁକ୍ମିଣୀ । ଏପରି ଅଭିବ୍ୟକ୍ତି ବହୁ କମ୍ ମଧ୍ୟଯୁଗୀୟ ସୃଜନ-କର୍ମରେ ଉପଲବ୍ଧ । ପୁଣି, ଏହାର ଗାୟନ ରୀତି ସମ୍ଭବତଃ

ଢଗବୃତ୍ତର ପୁନଃସର୍ଜନ । ଶବ୍ଦ ବସାଣ ଅସଂସ୍କୃତାୟିତ ଓ ଲୋକମୁଖର ଉଚ୍ଚାରଣଧର୍ମୀ । ଶବ୍ଦଗୁଡ଼ିକୁ ଦ୍ୱିତ୍ୱ (ଯଥା-ପଲବ, ସିଧି, ଉଧରିବା, ମୃତାନ୍ତ, ଦଂସ, ସନିଧ, ମତ ଇତ୍ୟାଦି) କରାଯାଇନାହିଁ; ଏ ସ୍ଥାନରେ ଅଧିକତଃ ଯ, ଯୁକ୍ତବର୍ଣ୍ଣଗୁଡ଼ିକ ଲିଖନରେ ଅନୁସ୍ୱାର ଓ ଚନ୍ଦ୍ରବିନ୍ଦୁ ସ୍ଥାନରେ ଅନୁସ୍ୱାରର ବ୍ୟବହାର ରହିଛି । ବିସର୍ଗର ବ୍ୟବହାର କରାଯାଇନାହିଁ ଏବଂ ବହୁ ସଂସ୍କୃତ ଶବ୍ଦ ଲିଖନରେ ଲୋକମୁଖର ଉଚ୍ଚାରଣକୁ ଗ୍ରହଣ କରାଯାଇଛି । କବି ସତେଯେପରି ସାରଳା ଦାସଙ୍କ ଚେତନାର ସୁଯୋଗ୍ୟ ଉତ୍ତରାଧିକାରୀ ।

ତେଣୁ ରୁକ୍ମିଣୀ ପରିଣୟ ପରି ବିଷୟବସ୍ତୁକୁ ଆଧାର କରି ଏକ ଯୁଗ୍ମ ଚଉତିଶା ରଚନା କରିଥିବା ନନ୍ଦା ବାଈଙ୍କୁ କାର୍ତ୍ତିକ ଦାସଙ୍କ ପ୍ରାୟ ସାମସମୟିକ, ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ଶେଷ କିମ୍ବା ସପ୍ତଦଶ ଶତାବ୍ଦୀର ପୂର୍ବାର୍ଦ୍ଧରେ ଜୀବିତ ଥିବା ସମ୍ଭାବନା ଅଯଥାର୍ଥ ନୁହେ ।

ଏହି ସମ୍ଭାବନାକୁ ସମର୍ଥନ କରିବାପାଇଁ ଅନ୍ୟ ଏକ ପ୍ରମାଣ ଉପସ୍ଥାପନ କରାଯାଇପାରେ । ଅଷ୍ଟାଦଶ ଶତାବ୍ଦୀର ଆରମ୍ଭରେ ଉପେନ୍ଦ୍ରଭଞ୍ଜ, ବିଶ୍ୱନାଥ ଖୁଣ୍ଟିଆ ପ୍ରମୁଖ କାମୋଦୀ ରାଗରେ ଲିଖିତ ପଦାବଳୀକୁ **ରୁକ୍ମିଣୀ ଚଉତିଶା ବାଣୀ**ରେ ଗାଇବାପାଇଁ ନିର୍ଦ୍ଦେଶ ଦେଇଛନ୍ତି । କାମୋଦୀ ଓଡ଼ିଆ କବିମାନଙ୍କର ଏକ ଲୋକପ୍ରିୟ ଛନ୍ଦ । ଆର୍ତ୍ତତ୍ରାଣ ଚଉତିଶା, ଜଣାଣ ଚଉତିଶା ଏହି ଛନ୍ଦରେ ରଚିତ । ଏହାକୁ ବିଭିନ୍ନ ବାଣୀରେ ଗାଇବାପାଇଁ କବିମାନେ ନିର୍ଦ୍ଦେଶ ଦେଇଥିବାରୁ ଗାୟକମାନଙ୍କଦ୍ୱାରା ଏହାର ଗାୟନ ପଦ୍ଧତିରେ ବିଭିନ୍ନତା ଥିବା ସୁସ୍ପଷ୍ଟ । ରୁକ୍ମିଣୀ ଚଉତିଶାର ଗାୟନ କୌଶଳ ଲୋକଛନ୍ଦର ନିକଟବର୍ତ୍ତୀ, ଅତ୍ୟନ୍ତ ଶ୍ରୁତିମଧୁର । ଉପେନ୍ଦ୍ରଭଞ୍ଜ ଏହାର ବାଣୀ ଅନୁସରଣ କରିଥିବା ଯୋଗୁ ଚଉତିଶାଟି ସମକାଳରେ ଲୋକପ୍ରିୟତା ଅର୍ଜ୍ଜନ କରିଥିବା ନିଶ୍ଚିତ । ପୂର୍ବବର୍ତ୍ତୀ କବିମାନେ ମଧ ଏହି ଚଉତିଶାର ଗାୟନ କୌଶଳକୁ ବାଣୀରୂପେ ଗ୍ରହଣ କରିଥାଇପାରନ୍ତି । ତେଣୁ ନନ୍ଦାବାଈଙ୍କୁ ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବବର୍ତ୍ତୀ କବୟିତ୍ରୀ ଭାବରେ ଗ୍ରହଣ କରିବାରେ ବିଶେଷ ଅସୁବିଧା ନାହିଁ ।

ଆଙ୍ଗିକ ଦୃଷ୍ଟିରୁ ମଧ ଏହି ଚଉତିଶା ଗୁରୁତ୍ୱପୂର୍ଣ୍ଣ । ଏହା ଏକ ଯୁଗ୍ମ ଚଉତିଶା । କବି ରୁକ୍ମିଣୀ ହରଣ ପ୍ରସଂଗକୁ ଆଧାର କରି ଚଉତିଶାଟି ଆରମ୍ଭ କରିବାପରେ ବୋଧହୁଏ ଅନୁଭବ କରିଛନ୍ତି, ଗୋଟିଏ ଚଉତିଶା ମଧରେ ଏହାର ବିଷୟବସ୍ତୁକୁ ଯଥାର୍ଥ ରୂପଦେବା ସମ୍ଭବ ନୁହେଁ । ଅବଶ୍ୟ ଚଉତିଶାପାଇଁ ସେ ଏକ ଦୀର୍ଘବୃତ୍ତ ଏବଂ ଗୋଟିଏ ଗୋଟିଏ ବର୍ଣ୍ଣକୁ ନେଇ ଦୁଇ ଦୁଇଟି ପଦର ପରିକଳ୍ପନା କରିଛନ୍ତି । ତଥାପି ଗୋଟିଏ ଚଉତିଶା ବିଷୟବସ୍ତୁପାଇଁ ଯଥେଷ୍ଟ ନଥିବା ସମ୍ଭାବନା ସେ ଉପଲବ୍ଧି କରିଛନ୍ତି । ଏଥିପାଇଁ ଦୁଇଟି ଚଉତିଶାର ବିନିଯୋଗ କରିଛନ୍ତି । ଫଳରେ ଶ୍ରୀକୃଷ୍ଣଙ୍କ ବିବାହ ବର୍ଣ୍ଣନା ସଂପୂର୍ଣ୍ଣ ହୋଇଛି । ପ୍ରଥମ ଚଉତିଶାଟି ରୁକ୍ମିଣୀଙ୍କଦ୍ୱାରା ଦ୍ୱାରକାକୁ ଦୂତ ପ୍ରେରଣଠାରେ ଏବଂ ଦ୍ୱିତୀୟଟି ବିବାହରେ ଶେଷ ହୋଇଛି । ପ୍ରଥମର ବର୍ଣ୍ଣାନୁକ୍ରମ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଏବଂ ଦ୍ୱିତୀୟଟି 'କ୍ଷ' ଠାରୁ 'କ' । ପ୍ରାୟ ସର୍ବତ୍ର ଗୋଟିଏ ଗୋଟିଏ ବ୍ୟଞ୍ଜନ ବର୍ଣ୍ଣକୁ ଆଦ୍ୟରେ ରଖି ଦୁଇ ଦୁଇଟି ପଦ ରଚିତ ହୋଇଥିବାବେଳେ, କେତୋଟିରେ ଗୋଟିଏ ଗୋଟିଏ ପଦ ରହିଛି । ଏହା ଲିପିକାରଙ୍କ ପ୍ରମାଦ କି କବିଙ୍କ କଳ୍ପିତ, କହିବା ସମ୍ଭବ ନୁହେଁ ।

ଦୀନକୃଷ୍ଣଙ୍କ **ଆର୍ତ୍ତତ୍ରାଣ ଚଉତିଶା** ଓ ନରେନ୍ଦ୍ରାନୁଜଙ୍କ **ଜଣାଣ ଚଉତିଶା** ଉଭୟ ଭାବ, ଶବ୍ଦପ୍ରୟୋଗ ଓ ସଂରଚନା ଦୃଷ୍ଟିରୁ ଗୋଟିଏ ପ୍ରକାରର । ଆର୍ତ୍ତ ଭକ୍ତର ଭାବାବେଗ ଏଗୁଡ଼ିକର ଭାବଭୂମି । ପ୍ରପଞ୍ଚ ଓ କ୍ଷମତାପୀଡ଼ିତ ମଣିଷ ଭିତରେ ମୁକ୍ତିପ୍ରତ୍ୟାଶୀ ଆତଙ୍କ ଏଠାରେ ଅଧାତ୍ମଆଶ୍ରିତ । ମନେହୁଏ, ସତେଯେପରି ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଆ ଜନସମୁଦାୟ ଦୀନକୃଷ୍ଣଙ୍କ ଭିତରେ ଆପଣା ଆପଣାକୁ ଅନୁଭବ କରିଛନ୍ତି । ଚଉତିଶାରେ ସେହି ଅନୁଭବର ଅଭିବ୍ୟକ୍ତି ହୋଇଛି । ଏବଂ, ନରେନ୍ଦ୍ରାନୁଜ ସମଧର୍ମୀ ଭାଷାପ୍ରୟୋଗ ଓ ରାଗ (କାମୋଦୀ) ପ୍ରବାହ ମାଧମରେ ଦୀନକୃଷ୍ଣଙ୍କୁ ସତେଯେପରି ପୁନଃ ସର୍ଜନା କରିଛନ୍ତି ।

ଦୀନକୃଷ୍ଣ ଦାସ (ସପ୍ତଦଶ- ଅଷ୍ଟାଦଶ ଶତାବ୍ଦୀ) ଙ୍କ **ଆର୍ତ୍ତତ୍ରାଣ ଚଉତିଶା** ପ୍ରାୟ ଅର୍ଦ୍ଧ ସହସ୍ରାଧିକ ଚଉତିଶା ମଧରୁ ସର୍ବାଧିକ ଲୋକପ୍ରିୟ, ପ୍ରଥମ ମୁଦ୍ରଣ ୧୮୬୯ ମସିହା । କବିଙ୍କ ରସକଲ୍ଲୋଳ କାବ୍ୟପରି ଏହା ସରଳ, ସରସ, ମଧୁର ଓ ଅନାବିଳ ଭକ୍ତିଭାବନାର ସ୍ୱତଃସ୍ଫୂର୍ତ୍ତ ପରିପ୍ରକାଶ । ଜନଶ୍ରୁତିରେ ତାଙ୍କ ଜୀବନ ଦୁଃଖମୟ ଏବଂ ଶରୀର ଦୁରାରୋଗ୍ୟ ବ୍ୟାଧିଗ୍ରସ୍ତ । ସମଗ୍ର ଚଉତିଶାରେ କୃପାନିଧି ଶ୍ରୀଜଗନ୍ନାଥଙ୍କ ନିକଟରେ ଜଣେ ଆର୍ତ୍ତ-ଭକ୍ତର କାରୁଣ୍ୟ ଉଦ୍‌ବେଳିତ । ଜନଶ୍ରୁତି କହେ, ଚଉତିଶା ଶେଷହେଲା ବେଳକୁ ସେ ବ୍ୟାଧିମୁକ୍ତ ହୋଇଯାଇଥିଲେ । ଭାବ ଉପଯୋଗୀ ଭାଷା, ପଦଯୋଜନାର ମାଧୁର୍ଯ୍ୟ ଏବଂ କାମୋଦୀ ରାଗର ସୁଶ୍ରାବ୍ୟତାଯୋଗୁଁ ଚଉତିଶାଟିର ଆଦର ଦୀର୍ଘ ଚାରିଶହ ବର୍ଷ ମଧରେ ମ୍ଲାନ ପଡ଼ିନାହିଁ । ବିଦଗ୍ଧ ପାଠକ ଏବଂ ଶ୍ରୋତାମାନେ ଏହାକୁ କେବଳ ଶୁଣି ଓ ପଢ଼ି ସନ୍ତୁଷ୍ଟ ହୋଇନାହାନ୍ତି; କବିର ଭାବନାକୁ ଚିତ୍ର ମାଧମରେ ରୂପ ଦେବାପାଇଁ ପ୍ରୟାସ କରିଛନ୍ତି; ସଂସ୍କୃତ ଅନୁବାଦ ମାଧମରେ ଓଡ଼ିଆ ରଚନାକୁ ବିଶ୍ୱ ଦରବାରରେ ପହଞ୍ଚାଇବାପାଇଁ ଚେଷ୍ଟା କରିଛନ୍ତି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଏହାର ଦୁଇଟି ଚିତ୍ରିତ ପୋଥି ରହିଛି - Ext - 316 ଏବଂ Ext - 317 । ଉଭୟ ୧୬ ପତ୍ରି ଏବଂ ଯଥାକ୍ରମେ ୨୦.୪ x ୪ ସି.ଏମ. ଏବଂ ୨୧.୮ x ୩ ଆକାର ବିଶିଷ୍ଟ । ଉଭୟ ପୋଥି ପୁରୀରୁ ସଂଗୃହୀତ ଏବଂ ସଂପୂର୍ଣ୍ଣ ଓ ଅକ୍ଷୁଣ୍ଣ । ଚଉତିଶାର ଅନ୍ୟ ଏକ ଚିତ୍ରିତ ପୋଥି ଉଦୟପୁରସ୍ଥିତ ବାଞ୍ଛାନିଧି ସଂଗ୍ରହାଳୟରେ ରହିଛି । ଏହାର ଚିତ୍ରକରଙ୍କ ଘର ବାଲିପଦର, ଗଂଜାମ । ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀର ଚିତ୍ରକର ମଧ ଚଉତିଶାଟିର ଶାବ୍ଦିକ ଭାଷାକୁ ଚିତ୍ରଭାଷାରେ ରୂପାନ୍ତରଣ କରିଥିବା ଜଣାଯାଏ । ଏହି ଗ୍ରନ୍ଥରେ ସଂଗ୍ରହାଳୟସ୍ଥିତ ଚିତ୍ରପୋଥି ହିଁ ମୁଦ୍ରିତ ।

ଚଉତିଶା ସହିତ ଏହାର ଦୁଇଟି ସଂସ୍କୃତ ଅନୁବାଦ ଏଠାରେ ସ୍ଥାନିତ କରାଯାଇଛି । ଉଭୟ ଅନୁବାଦକ ନିଜର ନାମ ଓ ପରିଚୟ ପ୍ରକାଶ କରିନାହାନ୍ତି । ସଂସ୍କୃତ ସ୍ତୁତି / ସ୍ତୋତ୍ରଗୁଡ଼ିକର ଏହାହିଁ ପରମ୍ପରା । ଏଥିରୁ ଗୋଟିଏ ସ୍ରଗଧରା ଏବଂ ଅନ୍ୟଟି ଶାର୍ଦ୍ଦୂଳବିକ୍ରୀଡ଼ିତ ଛନ୍ଦରେ ରଚିତ । ପ୍ରଥମଟିରେ ଅନୁବାଦକ ଓଡ଼ିଆ ଚଉତିଶା ନିୟମ ରକ୍ଷାକରିଥିଲା ବେଳେ, ୩୪ଟି ଶ୍ଳୋକ ବିଶିଷ୍ଟ ଦ୍ୱିତୀୟରେ ଏହି ନିୟମ ଅନୁପସ୍ଥିତ । ସ୍ରଗଧରା ବୃତ୍ତର ଅନୁବାଦ ମୂଳ ସହିତ ପ୍ରଥମେ କଟକ ଗୌରୀଶଙ୍କର ପ୍ରେସରୁ, ଶ୍ୟାମସୁନ୍ଦର ବୋଷଙ୍କଦ୍ୱାରା ୧୯୧୮ ମସିହା ଏବଂ ଦ୍ୱିତୀୟଟି ୧୯୦୯ ମସିହାରେ ବେଲଗୁଣ୍ଠା, ଗଂଜାମର ଶ୍ରୀ ଲକ୍ଷ୍ମୀନୃସିଂହ ପ୍ରେସରୁ ଭାଗିରଥି ଦାସଙ୍କଦ୍ୱାରା ପ୍ରଥମେ ମୁଦ୍ରିତ ହୋଇଛି । ଏହାର ଅନ୍ୟ ଏକ ସଂସ୍କରଣ **କୃପାସିନ୍ଧୁ ବିଜ୍ଞପ୍ତି** ନାମରେ ରମାକାନ୍ତ ମିଶ୍ରଙ୍କଦ୍ୱାରା ବ୍ରହ୍ମପୁର **ଶିରୋମଣି ପ୍ରେସରୁ** ପ୍ରକାଶପାଇଛି । ଏହା ଦେବନାଗରୀ ଅକ୍ଷରରେ ମୁଦ୍ରିତ ଏବଂ ପଣ୍ଡିତ କୁଳମଣି ମିଶ୍ରଙ୍କଦ୍ୱାରା କରାଯାଇଥିବା ସଂସ୍କୃତ ବ୍ୟାଖ୍ୟା ସମନ୍ୱିତ । ବେଲଗୁଣ୍ଠାରୁ ପ୍ରକାଶିତ ଅନୁବାଦରେ ଚଉତିଶା ନିୟମ ରକ୍ଷା କରାଯାଇ ନଥିବାରୁ ଏବଂ ଅନେକ ସ୍ଥଳରେ ଅନୁବାଦ ମୂଳ ଭାବାନୁସରି ହୋଇପାରି ନଥିବାଯୋଗୁଁ, ଏହା ଯେ ପରବର୍ତ୍ତୀ ସମୟରେ ଜଣେ ଭକ୍ତିଭାବାପନ୍ନ ପଣ୍ଡିତଙ୍କଦ୍ୱାରା ଅନୂଦିତ, ନିଃସନ୍ଦେହ । କିନ୍ତୁ ୧୯୧୮ ମସିହାରେ ପ୍ରକାଶିତ ସଂସ୍କରଣରେ ସ୍ରଗଧରା ବୃତ୍ତରେ ଅନୂଦିତ ରଚନାକୁ ନେଇ ପ୍ରକାଶକ ଶ୍ୟାମସୁନ୍ଦର ବୋଷଙ୍କ ଭୂମିକାରେ ଥିବା ମନ୍ତବ୍ୟ ରସକଲ୍ଲୋଳ ଓ ରସବିନୋଦକର୍ତ୍ତା ଦୀନକୃଷ୍ଣ ଦାସ ଜଣେ କି ଦୁଇଜଣ ପରି ଅନ୍ୟ ଏକ ସମସ୍ୟା ସୃଷ୍ଟିକରିଛି । ଭୂମିକାରେ ବୋଷ ଲେଖିଛନ୍ତି, "ସଂସ୍କୃତ ଆର୍ତ୍ତତ୍ରାଣର ପ୍ରଚାର ବିଶେଷ ଦେଖାଯାଏ ନାହିଁ । କେହି ସଂସ୍କୃତ ଓ ଓଡ଼ିଆ, ଉଭୟକୁ ଦୀନକୃଷ୍ଣ ଦାସଙ୍କ ରଚିତ କହନ୍ତି । କେହି ଅନ୍ୟ କବିଙ୍କ ସଂସ୍କୃତକୁ ଦୀନକୃଷ୍ଣ ଦାସ ପୟାର କରିଥିବାର କହନ୍ତି । କେହି ବା ଦୀନକୃଷ୍ଣ ଦାସଙ୍କ ରଚିତ ପୟାର ଦୃଷ୍ଟିରେ ସଂସ୍କୃତ ରଚନା ହୋଇଥିବାର ଅନୁମାନ କରନ୍ତି ।" ଏହି ସମସ୍ୟାର ମୀମାଂସା କରିବା କଷ୍ଟସାଧ ।

ଅନ୍ୟର ସଂସ୍କୃତକୁ ପୟାର କରିଥିବା ଚଉତିଶାର ଅନାବିଳ ରଚନା ଓ ଅନୁବାଦ ଉଭୟ ଦୀନକୃଷ୍ଣଙ୍କର କି ନୁହେଁ, କହିବା ସମ୍ଭବ ନୁହେଁ । ତଥାପି ଉଭୟ ସଂସ୍କୃତ ଅନୁବାଦ ଓଡ଼ିଆ ଚଉତିଶାର ମହତ୍ତ୍ୱ ଯେ ପ୍ରତିପାଦନ କରିଛି, ଏଥିରେ ଦ୍ୱିମତର ଅବକାଶ ନାହିଁ ।

ପ୍ରକାଶ ଥାଉ କି ଏହି ଚଉତିଶାର ବହୁ ପାଣ୍ଡୁଲିପି ଓଡ଼ିଶାର ସବୁ ଅଞ୍ଚଳରେ ଉପଲବ୍ଧ । ଲୋକପ୍ରିୟତା ହିଁ ଏହାର କାରଣ । ତେଣୁ ପ୍ରକ୍ଷିପ୍ତାୟନରେ ଏହାର ମୂଳରୂପ ପ୍ରାୟତଃ ବିକୃତ । ପୂର୍ବରୁ ମୁଦ୍ରିତ ଚଉତିଶାରେ ଏତେ ପ୍ରମାଦ ରହିଛି, ବହୁ ସମୟରେ ସେଗୁଡ଼ିକର ଅର୍ଥ ବୁଝିହୁଏନାହିଁ । ମାତ୍ର ଲୋକେ ଏହା ଗାନକରନ୍ତି । ଏହି ସଂକଳନରେ ବିଭିନ୍ନ ମୁଦ୍ରିତ ଓ ଅମୁଦ୍ରିତ ପାଠ୍ୟର ଏକ ଆପାତଃ ଶୁଦ୍ଧ (ମୂଳ) ରୂପ ନିର୍ମାଣର ଉଦ୍ୟମ କରାଯାଇଛି ।

ସଂକଳନର ଅନ୍ୟତମ ଚଉତିଶା 'କୁମୁଦ କାନ୍ତ ଚଉତିଶା' (ସଂଗ୍ରହାଳୟ ପୋଥି ସଂଖ୍ୟା (Ext. -149) । ଏଥିରେ ୮.୫ x ୪ ସେ.ମି. ବିଶିଷ୍ଟ ଏକୋଇଶିଟି ପତ୍ର ଅଛି । ସୁରକ୍ଷିତ ଓ ସଂପୂର୍ଣ୍ଣ ପୋଥିଟି କେଉଁଠାରୁ ସଂଗୃହୀତ ଜଣାଯାଏନାହିଁ । ଚିତ୍ରଶିଳ୍ପୀ ନିଜର ନାମ ଗୋପନ ରଖିଛନ୍ତି । ଚଉତିଶାର ଲେଖକ ନାରାୟଣ ଦାସ । ନାରାୟଣ ଦାସଙ୍କ ପରିଚୟ ଦେବାକୁ ଯାଇ ଗବେଷକ କେଦାର ନାଥ ମହାପାତ୍ର ସ୍ୱୀୟ ଖୁରୁଧା ଇତିହାସରେ ଲେଖିଛନ୍ତି, "ନାରାୟଣ ଦାସ ଶ୍ରୀ ରାଧା କୃଷ୍ଣ ଲୀଳା ସମ୍ବନ୍ଧରେ "ପଞ୍ଚାମୃତ ସିନ୍ଧୁ" ବା "ପ୍ରେମ ପଞ୍ଚାମୃତ ସିନ୍ଧୁ" ନାମକ ଖଣ୍ଡିଏ ଗ୍ରନ୍ଥ ରଚନା କରିଥିଲେ । ଏହା ତେରଟି ଅଧ୍ୟାୟ ବା ବିନ୍ଦୁରେ ବିଭକ୍ତ । ଗ୍ରନ୍ଥଟିର ରଚନା କାଳ / ପ୍ରତିଲିପି ପ୍ରସ୍ତୁତିର ସମୟ ଶ୍ରୀ ଦିବ୍ୟସିଂହ ଦେବଙ୍କ ତେତିଶି ଅଙ୍କ ଆଶ୍ୱିନ କୃଷ୍ଣ ପଞ୍ଚମୀ ମଙ୍ଗଳବାର, ଅର୍ଥାତ୍ ୧୭୧୫ ଖ୍ରୀଷ୍ଟାବ୍ଦ, ସେପ୍ଟେମ୍ବର ମାସ, ୬ ତାରିଖ ।"[୫] ଲିପିକାରଙ୍କ ଅଜ୍ଞତାବଶରୁ ୩୪ ଅଙ୍କଟି ୩୩ ଅଙ୍କରୂପେ ଉଲ୍ଲିଖିତ ଅଛି । ତେଣୁ କବିଙ୍କୁ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ପାଦରେ ଜୀବିତ ଥିବା କିମ୍ବା ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଜନ୍ମଗ୍ରହଣ କରିଥିବା ଅନୁମାନ ଅସମୀଚୀନ ନୁହେଁ । ସେହିପରି ନାରାୟଣ ଦାସଙ୍କ ନାମରେ ଅନ୍ୟ ଏକ ରଚନା ଦେଖିବାକୁ ମିଳେ । ଏହା କବିଶେଖର ଜ୍ୟୋତିରୀଶ୍ୱରଙ୍କ ସଂସ୍କୃତ **ପଞ୍ଚଶାୟକ** ଗ୍ରନ୍ଥର ଓଡ଼ିଆ ଅନୁବାଦ । ଏହାର ଉପଲବ୍ଧ ଗୋଟିଏ ପୋଥିରେ (OL/323) ଲେଖା ଅଛି, 'ଏମନ୍ତ ପ୍ରକାର ବିଚିତ୍ର ରସରେ ପଞ୍ଚପଟଳ ଶେଷ, ରସିକ ଜନେ ବୁଝିକର ରମଣ ବୋଲି ନାରାୟଣ ଦାସ' । **ପଞ୍ଚଶାୟକର** ନାରାୟଣ ଦାସ ନିଜକୁ କବିଶେଖର ଉପାଧିରେ ଭୂଷିତ କରିଛନ୍ତି । ବୋଧହୁଏ କବିଶେଖରଙ୍କ ଗ୍ରନ୍ଥକୁ ଅନୁବାଦ କରିଥିବାଯୋଗୁଁ ତାଙ୍କର ଏପ୍ରକାର ପ୍ରଲୋଭିତ ପ୍ରୟାସ । "କୁମୁଦକାନ୍ତ ଚଉତିଶା" ର ବିଷୟବସ୍ତୁ ଓ ଚିତ୍ରଗୁଡ଼ିକୁ ଅନୁଶୀଳନ କଲେ ରଚୟିତା ନାରାୟଣ ଦାସ **ପଞ୍ଚାମୃତ ସିନ୍ଧୁ** ଓ **ପଞ୍ଚଶାୟକର** କବି / ଅନୁବାଦକ ବୋଲି ନିଃସନ୍ଦେହରେ କୁହାଯାଇପାରେ ।

**କୁମୁଦକାନ୍ତ ଚଉତିଶା** ଉପର୍ଯ୍ୟୁକ୍ତ ତିନିଗୋଟି ଚଉତିଶାଠାରୁ ଅଲଗା ପ୍ରକାରର । ପଢ଼ିଲେ ଲାଗେ, ଏହା ମଧ୍ୟକାଳୀନ କାବ୍ୟାଦର୍ଶର ଭାବଧର୍ମୀ ଓ ସଂକ୍ଷିପ୍ତ ଉଚ୍ଚାରଣ । ରୁକ୍ମିଣୀ ନୁହନ୍ତି, ରାଧା ଓ ଗୋପାଙ୍ଗନାମାନେ ଏହାର ନାୟିକା । ସେମାନେ କୃଷ୍ଣ ସମର୍ପିତା, ଖଣ୍ଡିତା ଏବଂ ମିଳନ-ବିଧୁରା । ସେମାନଙ୍କ ବିଧୁରପଣକୁ ମାନସିକ ବିଭ୍ରମ କୁହାଯାଇପାରେ, ଯାହା ଶରୀର ଓ ଆଚରଣରେ ପୂର୍ଣ୍ଣତଃ ଅଭିବ୍ୟକ୍ତ । ଏହି ପୃଷ୍ଠଭୂମିରେ କୁହାଯାଇପାରେ ଯେ, ଜୟଦେବଙ୍କ ଗୀତଗୋବିନ୍ଦ ଉପର୍ଯ୍ୟୁକ୍ତ କାବ୍ୟାଦର୍ଶର ଉତ୍ସ, ଯାହାର ପ୍ରଭାବରୁ ବୈଷ୍ଣବ ରାଗାନୁଗାମାର୍ଗୀ, ଭକ୍ତ-କବିମାନେ ଆଦୌ ମୁକ୍ତ ରହିପାରିନାହାନ୍ତି । ମାନବୀୟ ପ୍ରେମ ଓ ସମ୍ଭୋଗରେ ସକଳ ସ୍ୱାଭାବିକ ଆଚରଣ କୃଷ୍ଣ, ରାଧା ଓ ଗୋପାଙ୍ଗନା ମାଧ୍ୟମରେ ଉଚ୍ଚାରିତ ହୋଇଛି । ସେହି ନ୍ୟାୟରେ, କବି ନାରାୟଣ ଦାସଙ୍କୁ ଜୟଦେବ ଓ କବିସୂର୍ଯ୍ୟଙ୍କ ପରି ଆମେ ଅନ୍ୟତମ 'ତୁଳସୀ ପତ୍ରିଆ' କହିପାରିବା ଏବଂ ସ୍ୱୀକାର କରିବା, ଏହାହିଁ ସେମାନଙ୍କ ଅମରତ୍ୱ ଓ ଲୋକପ୍ରିୟତାର କାରଣ । କବି ଶେଷରେ ଏହା ତାଙ୍କର ଅନୁଭବର କାବ୍ୟିକ ରୂପାୟନ ବୋଲି ସୂଚାଇଛନ୍ତି । ଏଥିରେ **ପଞ୍ଚାମୃତସିନ୍ଧୁର** ଭକ୍ତିଭାବନା ସହିତ **ପଞ୍ଚଶାୟକର** ପ୍ରୀତି ଭାବନାର ସମନ୍ୱୟ ସୁସ୍ପଷ୍ଟ ।

ନରେନ୍ଦ୍ରାନୁଜ (ରାଜଭ୍ରାତା)ଙ୍କଦ୍ୱାରା ରଚିତ **ଜଣାଣ ଚଉତିଶା** ମଧ୍ୟ ଏକ ଅପ୍ରକାଶିତ ଚଉତିଶା । ଏହା କାଳୀଚରଣ ପଟ୍ଟନାୟକଙ୍କଦ୍ୱାରା କଟକ ଜଗନ୍ନାଥ ବଲ୍ଲଭରୁ ସଂଗୃହୀତ, ସତର ପୃଷ୍ଠା ବିଶିଷ୍ଟ ଓ ଚିତ୍ରିତ (ସଂଗ୍ରହାଳୟ ପୋଥି ସଂଖ୍ୟା Ext. -100 ଆକାର ୧୯ x ୩.୮ ୬ । ଚଉତିଶାଟିର ରଚନା ସମୟ ସଂଗ୍ରାହକ ଊନବିଂଶ ଶତାବ୍ଦୀ ବୋଲି ସମ୍ଭାବନା କରିଛନ୍ତି । ପୋଥିର ଅବସ୍ଥା, ଅକ୍ଷର, ଚିତ୍ରରୁ ଏହା ଊନବିଂଶ ଶତାବ୍ଦୀର ଶେଷ କିମ୍ବା ବିଂଶ ଶତାବ୍ଦୀର ଆଦ୍ୟରେ ଲେଖାଯାଇଥିବା ସମ୍ଭବ । ସମ୍ଭବତଃ, ରାଜଭ୍ରାତା ନିଜେ ହିଁ ଚିତ୍ରଗୁଡ଼ିକ ଅଙ୍କନ କରିଛନ୍ତି । ଚିତ୍ରଗୁଡ଼ିକରୁ ପୋଖତ ହସ୍ତର କଳାପାଟବତା ବାରିହୁଏ ନାହିଁ । ଚଉତିଶାଟି ଦୀନକୃଷ୍ଣଙ୍କ ଆର୍ତ୍ତତ୍ରାଣ ଚଉତିଶାର ଛାୟାରେ ଲିଖିତ । କିନ୍ତୁ ଆର୍ତ୍ତତ୍ରାଣ ଚଉତିଶାର ଭକ୍ତିଭାବନା ବା ପଦଲାଳିତ୍ୟ, ଅନୁସୃତ ଚଉତିଶାଟିରେ ସୁଲକ୍ଷ୍ୟ ନୁହେଁ । ସେଥିପାଇଁ ମୂଳ ଚଉତିଶାର ଅନୁରୂପ ଲୋକପ୍ରିୟତା ଅର୍ଜନ କରିବା **ଜଣାଣ ଚଉତିଶା** ଭାଗ୍ୟରେ ସମ୍ଭବିପାରିନାହିଁ । କବି ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିବାପାଇଁ ଏଥିରେ ପ୍ରାନ୍ତ ଯମକ ଅଳଂକାର ସଂଯୋଜନା ପ୍ରୟାସ କରିଛନ୍ତି । କିନ୍ତୁ ଅନେକ ସ୍ଥଳରେ ଏହା ଯମକାଭାସ କିମ୍ବା ପ୍ରାନ୍ତାନୁପ୍ରାସରେ ପର୍ଯ୍ୟବସିତ ହୋଇଛି । ଏହା ଓଡ଼ିଆ ଚଉତିଶାର ସଂଖ୍ୟା ବୃଦ୍ଧିରେ ସହାୟକ ; କିନ୍ତୁ ଗୁଣାତ୍ମକ ଦୃଷ୍ଟିରୁ ସ୍ୱତଂତ୍ର ନୁହେଁ ।

## ଦୁଇ

ଏହା ବହୁ ସ୍ୱୀକୃତ ଯେ, ଭକ୍ତି ଓ ପ୍ରୀତି, ବିଳାସ ଓ ବୈରାଗ୍ୟ, ଯୋଗ ଓ ଭୋଗ ମଧ୍ୟଯୁଗୀୟ ଭାରତୀୟ ସାହିତ୍ୟର ଆଧାର -ଭୂମି । ସ୍ରଷ୍ଟାମାନେ ବିଷୟବସ୍ତୁପାଇଁ ରାମାୟଣ, ମହାଭାରତ ଓ ପୁରାଣ ଉପରେ ନିର୍ଭରଶୀଳ ହୋଇଛନ୍ତି । ଏଗୁଡ଼ିକରେ ବର୍ଣ୍ଣିତ ଉପାଖ୍ୟାନ ଓ ଆଖ୍ୟାୟିକା ସମୂହକୁ ଆପଣା ଆପଣାର ସୃଜନରେ ବୈଚିତ୍ର୍ୟମଣ୍ଡିତ କରିଛନ୍ତି । ବିଷୟବସ୍ତୁରେ ଅଭିନବତାର ଅଭାବ, ସେମାନଙ୍କୁ ଗଢ଼ଣ-କୌଶଳ ମନସ୍କ କରିଛି । ଫଳରେ ଭାବାଳଂକାର ଅପେକ୍ଷା ଶବ୍ଦାଳଂକାର, ରସାଳତା ଅପେକ୍ଷା କ୍ଲିଷ୍ଟତା, ଗୁଡ଼ପାକ ଅପେକ୍ଷା ନାରିକେଳପାକ ସେମାନଙ୍କପାଇଁ ଅଧିକ ଆଦରଣୀୟ ହୋଇଛି । ସୃଷ୍ଟିଲାଭକରିଛି ଯମକ, ଶ୍ଳେଷ, ଦ୍ୱ୍ୟର୍ଥୀ, ତ୍ର୍ୟର୍ଥୀ, ଶତାର୍ଥୀ କାବ୍ୟ ସହିତ ଖଣ୍ଡକାବ୍ୟ, ପଞ୍ଚାଶତ୍, ଶତକ ଇତ୍ୟାଦି ବିବିଧ ଆଙ୍ଗିକ-ପରୀକ୍ଷାମୂଳକ ରଚନା । ପ୍ରଚ୍ଛାଦିତ ଲାବଣ୍ୟ ଭିତରେ ଆତ୍ମଗତ ସୌନ୍ଦର୍ଯ୍ୟ ଗୌଣ ହୋଇପଡ଼ିଛି ।

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ମଧ୍ୟ ସର୍ବଭାରତୀୟ ସାହିତ୍ୟିକ ପରଂପରାରୁ ଭିନ୍ନ ନୁହେଁ । ଅବଶ୍ୟ ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟିକଙ୍କ ଅପେକ୍ଷା ଓଡ଼ିଆ କବିମାନେ କାଳ୍ପନିକ ନାୟକ-ନାୟିକାଶ୍ରୟୀ ରଚନା ପ୍ରତି ଅଧିକ ଆଗ୍ରହୀ ହୋଇଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ ଏ ପ୍ରକାର ରଚନା ସମୂହ "ପୁରାଣ ଛାଇ କଳ୍ପନା ମାଧୁରୀ" ପରି । ଦୀର୍ଘ କାବ୍ୟରଚନା କ୍ଷେତ୍ରରେ ସଂସ୍କୃତ କାବ୍ୟକାରମାନଙ୍କ ପରି ଓଡ଼ିଆ କବିମାନେ ମଧ୍ୟ ଦ୍ୱ୍ୟର୍ଥୀ, ବର୍ଣ୍ଣାଦ୍ୟ, ଅବନା କାବ୍ୟମାନ ସୃଷ୍ଟି କରିଛନ୍ତି । କାବ୍ୟର ଆଙ୍ଗିକରେ ଏ ପ୍ରକାର ନିରୀକ୍ଷା ଭିତରୁ ପ୍ରେରଣା ନେଇ ସେମାନେ ଯେଉଁସବୁ ଗୀତି/ ଗୀତିକାବ୍ୟ ସୃଷ୍ଟି କରିଛନ୍ତି, ତାହା ଅଧିକ ବିଚିତ୍ର । ବିଷୟବସ୍ତୁ କିମ୍ବା ଭାବସଂପଦ ଅପେକ୍ଷା ଏଗୁଡ଼ିକର ଆଙ୍ଗିକ-ଗଠନ କୌଶଳ ବୋଧହୁଏ ଅନ୍ୟାନ୍ୟ ପ୍ରାନ୍ତୀୟ ଭାରତୀୟ ସାହିତ୍ୟରେ ବିରଳ । ଚଉପଦୀ, ପଦିଆ, ପୋଈ, ମାଳଶ୍ରୀ, ଷୋଡ଼ଶା, ଚମ୍ପୂ, ଦାଣ୍ଡଧୁଆ, ପଢ଼ି, ତୁମ୍ବା, ବୋଲି, ମଙ୍ଗଳଗୀତି, କୋଇଲି ଇତ୍ୟାଦି ଏହି ଶ୍ରେଣୀର । ଏହାର ଲୋକପ୍ରିୟତାରେ ଓଡ଼ିଶାର ସଂସ୍କୃତ କବିମାନେ ମଧ୍ୟ ପ୍ରଭାବିତ । ଅଳଂକାର ଗ୍ରନ୍ଥ ପ୍ରଣେତା ଗୋପୀନାଥ ପାତ୍ର ଏହାକୁ

ଶ୍ୱାୟ ଅଳଂକାର ଗ୍ରନ୍ଥ **କବି ଚିନ୍ତାମଣିରେ** ମେଘଦୂତକୁ ଖଣ୍ଡକାବ୍ୟର ଶ୍ରେଣୀଭୁକ୍ତ କରିଥିବାବେଳେ, ପଣ୍ଡିତରାୟ ଯତିରାଜ ଆଚାର୍ଯ୍ୟ 'ଭଗବତ୍ ସ୍ତୁତି ଶତକଂ' ଶତକର 'ପ୍ରସନ୍ନ କାରୁଣ୍ୟ ଲହରୀ' ଅଂଶକୁ (୩୪ ଶ୍ଳୋକରୁ ୬୭ ଶ୍ଳୋକ ପର୍ଯ୍ୟନ୍ତ) ଚଉତିଶା ନିୟମରେ ନିବଦ୍ଧ କରିଛନ୍ତି । ଅନୁରୂପ ଭାବେ ଓଡ଼ିଶାର ଜୟପୁର ରାଜ୍ୟର ରାଜା ବିକ୍ରମଦେବ ବର୍ମାଙ୍କ 'କେଶବ ସ୍ତୋତ୍ର' ଏହି ନିୟମରେ ରଚିତ । ଦୁଇଜଣ ଶ୍ୱାୟ ନାମ ଗୋପନ ରଖିଥିବା ବିଶିଷ୍ଟ ସଂସ୍କୃତ ବିଦ୍ୱାନ୍ ଦୀନକୃଷ୍ଣ ଦାସଙ୍କ ଆର୍ତ୍ତତ୍ରାଣ ଚଉତିଶାକୁ ଅନୁରୂପ ନିୟମ ରକ୍ଷାକରି ସଂସ୍କୃତ ଭାଷାରେ ଅନୁବାଦ କରିଯାଇଛନ୍ତି। ଉଭୟ ଅନୁବାଦ ଏହି ସଂକଳନରେ ସ୍ଥାନିତ ହୋଇଛି ।

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଚଉତିଶା ଏକ ଲୋକପ୍ରିୟ ପ୍ରାରୂପ । ବର୍ଣ୍ଣମାଳାର 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ୩୪ଟି ବ୍ୟଞ୍ଜନ ବର୍ଣ୍ଣକୁ ପ୍ରତ୍ୟେକ ପଦର ଆଦ୍ୟରେ ବିନ୍ୟସ୍ତକରି ଏହା ରଚିତ । ଏହା ଚଉତିଶାର ସରଳତମ ରୂପ । ପରବର୍ତ୍ତୀ ସମୟରେ କବିମାନେ ଏହି ବର୍ଣ୍ଣ ବିନ୍ୟାସକୁ ଆଧାରକରି ବହୁ ପରୀକ୍ଷା ନିରୀକ୍ଷା କରିଛନ୍ତି । ବର୍ଣ୍ଣମାଳାର 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ୩୪ଟି ବ୍ୟଞ୍ଜନକୁ କ୍ରମାନ୍ୱୟରେ କିମ୍ବା ବିପରୀତ କ୍ରମରେ ପ୍ରତ୍ୟେକ ପଦର ପାଦ, ପାଦାଂଶ, ଶବ୍ଦର ଆଦ୍ୟରେ କିମ୍ବା ପ୍ରାନ୍ତରେ କିମ୍ବା ଆଦ୍ୟ - ପ୍ରାନ୍ତରେ କିମ୍ବା କୌଣସି ଏକ ନିର୍ଦ୍ଦିଷ୍ଟ ବର୍ଣ୍ଣ ପରେ ଯତିପାତ ସ୍ଥାନରେ ନ୍ୟସ୍ତକରି ଗୀତମାନ ଲେଖିଛନ୍ତି । ସଂସ୍କୃତ ସାହସ୍ରୀ, ସପ୍ତଶତୀ, ଶତକ, ପଞ୍ଚାଶିକା, ଅଷ୍ଟକ, ପଞ୍ଚକ ଇତ୍ୟାଦିର ଏହା ସମପର୍ଯ୍ୟାୟୀ ରଚନା । କିନ୍ତୁ ଓଡ଼ିଆ ଚଉତିଶା କେବଳ ସଂଖ୍ୟାତ୍ମକ ନୁହେ, ଅକ୍ଷରାତ୍ମକ ମଧ୍ୟ । ୩୪ଟି ପଦ ରହିବା, ଚଉତିଶାର ସାଧାରଣ ନିୟମରୁ ନ୍ୟୂନ ବା ଅଧିକ ହୋଇପାରେ - ଏହି ସଂଖ୍ୟା ଏକରୁ ଅଠଷଠି କିମ୍ବା ଶହେ ଦୁଇ ପର୍ଯ୍ୟନ୍ତ ପ୍ରଲମ୍ବିତ । ଅବଶ୍ୟ ବର୍ଣ୍ଣ ସଂଖ୍ୟାରେ ବ୍ୟତିକ୍ରମ କ୍ଷମଣୀୟ ନୁହେ । କିନ୍ତୁ ଓଡ଼ିଆ ଭାଷାରେ କେତୋଟି ବ୍ୟଞ୍ଜନାଦି ଶବ୍ଦର ବିରଳତା ଏବଂ କଥିତ ଭାଷାର ଉଚ୍ଚାରଣଗତ ବିଶେଷତ୍ୱ, ଚଉତିଶାର ବର୍ଣ୍ଣାଦ୍ୟ ନିୟମକ୍ରମକୁ ବୈକଳ୍ପିକ କରିଦେଇଛି ।

ଓଡ଼ିଆ ଭାଷାରେ ଙ, ଞ, ଣ, ବର୍ଣ୍ଣାଦ୍ୟ ଶବ୍ଦ ପ୍ରାୟଶଃ ନାହିଁ । ଏଗୁଡ଼ିକ ସାଧାରଣତଃ ଉଅଁ, ଇଅଁ ବା ନ ଏବଂ ଅଣ ରୂପେ ଉଚ୍ଚାରିତ । ଏଥିପାଇଁ ଚଉତିଶା ରଚୟିତାମାନେ ଏହି ବର୍ଣ୍ଣାଦ୍ୟ ଶବ୍ଦ ସ୍ଥାନରେ ଅନ୍ୟ ସ୍ୱର ବା ବ୍ୟଞ୍ଜନାଦ୍ୟ ଶବ୍ଦ ସଂଯୋଜନ କରିଛନ୍ତି । ଅବଶ୍ୟ ଗୋଟିଏ ଚଉତିଶା ପୋଥିର ଅନୁଲେଖକ (ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପୋଥି ସଂଖ୍ୟା O/L 1811) କବିଙ୍କ ବୈଶିଷ୍ଟ୍ୟ ପ୍ରଦର୍ଶନ ନିମିତ୍ତ "ଙ" ଓ "ଣ" ବର୍ଣ୍ଣାଦ୍ୟ ଶବ୍ଦ ରଖିବାପାଇଁ (କମଳନେତ୍ର ଚଉତିଶା) ଏବଂ ବଳଭଦ୍ରଙ୍କ କ୍ଷେତ୍ର ଚଉତିଶାରେ, "ଉନ୍ନତିକର" ସ୍ଥାନରେ "ଙର୍ଣ୍ଣତୀକର" ଏବଂ "ଅନ୍ତର୍ଗତେ" ସ୍ଥାନରେ "ଣ ତ ର୍ଗତେ" ଲେଖାଯାଇଛି । କିନ୍ତୁ ଅନ୍ୟାନ୍ୟ ଚଉତିଶାରେ 'ଙ' ସ୍ଥାନରେ କବିମାନେ ଉ, ଅଁ, ଉ ଓ ଅ, ଆ, ଏ, ନ ବର୍ଣ୍ଣାଦ୍ୟ ଶବ୍ଦ ବ୍ୟବହାର କରିଛନ୍ତି । ସେହିପରି ଞ ସ୍ଥାନରେ ନ ଓ ଅ ଏବଂ ଣ ସ୍ଥାନରେ ଅଣ, ନ, ଅ, ଆ, ଈ, ଉ, ଏ, ନ ବର୍ଣ୍ଣାଦ୍ୟ ଶବ୍ଦ ବ୍ୟବହୃତ । ଓଡ଼ିଆରେ ଜ ଓ ଯ ଏବଂ ଶ, ଷ, ସ ର ଉଚ୍ଚାରଣଗତ ପାର୍ଥକ୍ୟ ସ୍ପଷ୍ଟ ନଥିବାଯୋଗୁଁ କବିମାନେ ଏସବୁକୁ ଯାଦୃଚ୍ଛିକ ବ୍ୟବହାର କରିଛନ୍ତି । ଫଳରେ ବର୍ଣ୍ଣାଦ୍ୟ ଶବ୍ଦସଂଖ୍ୟା ଦୁଇ କିମ୍ବା ତିନି କମିଯାଇଛି, ମାତ୍ର ପଦସଂଖ୍ୟା ଅପରିବର୍ତ୍ତିତ ରହିଛି । ଚଉତିଶାଗୁଡ଼ିକରେ, ବିଶେଷତଃ, ପ୍ରାଚୀନ ଚଉତିଶାରେ 'କ୍ଷ' ଓ 'ଛ' ର ପାର୍ଥକ୍ୟ ମଧ୍ୟ ଲକ୍ଷ୍ୟ କରାଯାଏନାହିଁ । ଗୃହୀତ ଚଉତିଶାଗୁଡ଼ିକର 'ଛ' ସ୍ଥାନରେ 'କ୍ଷ' ର ପ୍ରୟୋଗ ପ୍ରାୟଶଃ ପରିଦୃଷ୍ଟ । ସଂସ୍କୃତ ବର୍ଣ୍ଣମାଳାରେ କ୍ଷ ଏକ ସଂଯୁକ୍ତ ବର୍ଣ୍ଣ (କ+ଷ) । ତେଣୁ ସରସ୍ୱତୀ କଣ୍ଠାଭରଣକାର ଉଦାହୃତ ଶ୍ଳୋକରେ ତେତିଶଟି ବର୍ଣ୍ଣ ବିନ୍ୟାସ କରିଛନ୍ତି । ପ୍ରାଥମିକ ଓଡ଼ିଆ ଅଭିଧାନଗୁଡ଼ିକରେ ମଧ୍ୟ 'କ' ପରେ 'କ୍ଷ' ବର୍ଣ୍ଣାଦ୍ୟ ଶବ୍ଦକୁ ସ୍ଥାନିତ କରାଯାଇଛି । ଓଡ଼ିଆରେ ଏହାର ଉଚ୍ଚାରଣ 'ଖ୍ୟ' ଅନୁରୂପ । ଅତୀତରେ ବୋଧହୁଏ ଏହାର ଉଚ୍ଚାରଣ 'ଛ' ର ନିକଟତର ଥିଲା । ତେଣୁ କେବଳ ଚଉତିଶା ନୁହେଁ, କାବ୍ୟର ଅନୁଲେଖକ ଓ ଲେଖକମାନେ 'ଛ' ଓ 'କ୍ଷ' କୁ ବୈକଳ୍ପିକ ଭାବେ ବ୍ୟବହାର କରିଛନ୍ତି । ଓଡ଼ିଆରେ, ଅନୁରୂପଭାବେ "ଳ" ଆଦ୍ୟ ଶବ୍ଦର ବ୍ୟବହାର ବିରଳ । ତେଣୁ ଚଉତିଶାର ଅଷ୍ଟବିଂଶତି ବର୍ଣ୍ଣାଦ୍ୟ ପଦଟି "ଲ" ଆଦ୍ୟ । କଥିତ ଭାଷାରେ କେତେକ ଅଞ୍ଚଳରେ "ଲାଦ୍ୟ" ଶବ୍ଦଗୁଡ଼ିକୁ "ନାଦ୍ୟ" ରୂପେ ଉଚ୍ଚାରଣ କରାଯାଉଥିବାରୁ କେତେକ ଚଉତିଶାକାର 'ଲ' ସ୍ଥାନରେ 'ନ' ବ୍ୟବହାର କରିଛନ୍ତି । ପ୍ରାଚୀନ ଓଡ଼ିଆ ଭାଷାର ଧ୍ୱନିତତ୍ତ୍ୱ ଅଧ୍ୟୟନପାଇଁ ଏଗୁଡ଼ିକର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ଚଉତିଶାର ଆଙ୍ଗିକ ଶବ୍ଦକ୍ରୀଡ଼ା କବିର ଆତ୍ମ-ପ୍ରଦର୍ଶନ ବା କୌତୂହଳ ପ୍ରବୃତ୍ତିକୁ ପ୍ରଶମିତ କରିପାରେ, କିନ୍ତୁ ରସଗ୍ରାହୀ ପାଠକ ଅପେକ୍ଷାକରେ ଏହାର ଭାବ ସୌନ୍ଦର୍ଯ୍ୟକୁ । ଉପଯୁକ୍ତ ବିଷୟ ନିର୍ବାଚନ, ରସାନୁକୂଳ ଶବ୍ଦ ଓ ଅଳଂକାର ବିନ୍ୟାସ ଏବଂ ଲେଖନୀଚାଳନା କାଳରେ କବିର ଆତ୍ମବିସ୍ମୃତି ହିଁ ଯେ କୌଣସି ସାରସ୍ୱତ ସୃଷ୍ଟିକୁ ସାଫଲ୍ୟ ମଣ୍ଡିତ କରିଥାଏ । ବିଶେଷ କରି, ଦୀର୍ଘକାବ୍ୟ ଅପେକ୍ଷା ସଂକ୍ଷିପ୍ତ ଗୀତି ରଚନାପାଇଁ ଏଗୁଡ଼ିକ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ସୀମିତ ସମୟ ମଧ୍ୟରେ ପାଠକକୁ ବିମୋହିତ କରି କାବ୍ୟିକ ଆନନ୍ଦପ୍ରଦାନ ସହଜସାଧ୍ୟ ନୁହେଁ । ସେହି ଦୃଷ୍ଟିରୁ ସବୁ ଚଉତିଶା ଲୋକପ୍ରିୟ ହୋଇପାରେନାହିଁ । ବିଷୟବସ୍ତୁ ଦୀର୍ଘ ହେଲେ, କବି ଦୁଇ କିମ୍ବା ତତୋଽଧିକ ଚଉତିଶା ମଧ୍ୟରେ ତାହାକୁ ରୂପଦେବାପାଇଁ ପ୍ରୟାସ କରିଥାନ୍ତି । ବିଷୟବସ୍ତୁ ସଂକ୍ଷିପ୍ତ ହେଲେ, କବିତା ପୁନରୁକ୍ତି ବହୁଳ ହୋଇଯାଏ, ପାଠକ ଏହାକୁ ଗ୍ରହଣ କରିପାରନ୍ତି ନାହିଁ ।

ପ୍ରାଥମିକ ସ୍ତରରେ କବିମାନେ ପୁରାଣାଶ୍ରିତ କଥାବସ୍ତୁକୁ ଆଧାର କରି ଚଉତିଶାମାନ ଲେଖିଛନ୍ତି । ବତ୍ସା (ବଂଶୀ) ଦାସଙ୍କ **କଳସାଚଉତିଶା**, ବଂଶୀଦାସଙ୍କ **ଗୌରୀକଳସା**, ନନ୍ଦାବାଇଙ୍କ **ରୁକ୍ମିଣୀଚଉତିଶା**, ରଘୁ ଅରକ୍ଷିତଙ୍କ **ଶକୁନ୍ତଳାଚଉତିଶା**, ମାର୍କଣ୍ଡ ଦାସଙ୍କ କେଶବକୋଇଲି ଚଉତିଶା ଇତ୍ୟାଦି ଏହାର କେତୋଟି ଉଦାହରଣ । କିନ୍ତୁ ସାମସମୟିକ ଏବଂ ପରବର୍ତ୍ତିକାଳୀନ କବିମାନେ ଚଉତିଶାର ସୀମିତ କଳେବର ଏବଂ ବିଷୟବସ୍ତୁର ବିସ୍ତାର ସଂପର୍କରେ ସଚେତନ ହୋଇଛନ୍ତି । ସେଥିପାଇଁ ସେମାନେ ସ୍ମରଣ, ଜଣାଣ, ଚିଟାଉ, ଦୂତଦୂତୀ ପ୍ରେରଣ, ମନବୋଧ, ଯୋଗ, ଚାଟୁ ଇତ୍ୟାଦିକୁ ଚଉତିଶାର ବିଷୟବସ୍ତୁ କରିଛନ୍ତି । କାରଣ ଏହି ବିଷୟବସ୍ତୁକୁ ଯାଦୃଚ୍ଛିକ ଭାବେ ସୀମିତ ଓ ବିସ୍ତୃତ କରାଯାଇପାରେ ।

## ତିନି

ଓଡ଼ିଆ ଚଉତିଶାର ଉତ୍ସ ଅନୁସନ୍ଧାନ କରିବାପାଇଁ ଆଲୋଚକମାନେ କର୍ମକାଣ୍ଡ, ତନ୍ତ୍ରଶାସ୍ତ୍ର, ସଙ୍ଗୀତଶାସ୍ତ୍ର ଇତ୍ୟାଦିର ଆଶ୍ରୟ ନେଇଛନ୍ତି । ଭାରତୀୟ ଧାର୍ମିକ ପରଂପରାରେ **ମାତୃକାନ୍ୟାସ** ଏବଂ **ମାତୃକାପ୍ରବନ୍ଧ** ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି । ପ୍ରତ୍ୟେକ ଅକ୍ଷର ଯେ ଅନନ୍ତ ଦିବ୍ୟଶକ୍ତି ବିଶିଷ୍ଟ, ଏହି ବିଶ୍ୱାସକୁ ଆଧାରକରି ପରାଶକ୍ତିର ଉଜ୍ଜୀବନପାଇଁ ଦେବଦେବୀଙ୍କର ଅଙ୍ଗପ୍ରତ୍ୟଙ୍ଗ, ସ୍ତୁତି, ସ୍ତୋତ୍ର, ନାମାବଳୀରେ ଅ ଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷରଗୁଡ଼ିକର କ୍ରମବିନ୍ୟାସ କରାଯାଇଛି । କୌତୂହଳର ବିଷୟ, ଏହି ପରଂପରାର ଅନୁସରଣରେ ସିଦ୍ଧାର୍ଥ (ଗୌତମ ବୁଦ୍ଧ) ଙ୍କୁ ଗୁରୁ ଦାରକାଚାର୍ଯ୍ୟ ଅକ୍ଷର ଶିକ୍ଷାଦେବା ସଂପର୍କରେ ଏକ ଦନ୍ତକଥା 'ଲଳିତବିସ୍ତର' ଗ୍ରନ୍ଥରେ ବର୍ଣ୍ଣିତ ଅଛି । ଆଚାର୍ଯ୍ୟ ଗୋଟିଏ ଗୋଟିଏ ଅକ୍ଷର ଉଚ୍ଚାରଣ କଲାମାତ୍ରେ, ସିଦ୍ଧାର୍ଥ ସେହି ଅକ୍ଷରକୁ ଆଦ୍ୟରେ ରଖି ଏକ ଉଚ୍ଚ ଦାର୍ଶନିକ ତତ୍ତ୍ୱ ସମ୍ବଳିତ ବାକ୍ୟ ଉଚ୍ଚାରଣ କରୁଥିଲେ । ଯଥା - "ଯଦା ଅକାରଂ ପରିକୀର୍ତ୍ତୟନ୍ତି ସ୍ମ ସଦା ଅନିତ୍ୟଃ ସର୍ବସଂସ୍କାର ଶବ୍ଦୋ

ନିଷ୍କରତି ସ୍ମ x x x କ କାରେ କର୍ମ ବିପାକାବତାର ଶବ୍ଦଃ । 'ଖ' କାରେ 'ଖ' ସମ ସର୍ବଧର୍ମ ଶବ୍ଦଃ । 'ଗ' କାରେ ଗମ୍ଭୀରଧର୍ମପ୍ରତିତ୍ୟ ସମୁତ୍ପାଦାବତାର ଶବ୍ଦଃ x x x ହ କାରେ ହିତ କ୍ଳେଶ ବିଭାଗଶବ୍ଦଃ । 'କ୍ଷ' କାରେ ପରିକୀର୍ତ୍ତିମାନେ କ୍ଷଣ ପର୍ଯ୍ୟନ୍ତ । ଭିଲାପ୍ୟ ସର୍ବଧର୍ମ ଶତଧା ନିଷ୍କରତି ସ୍ମ'' । ହୁଏତ ବର୍ଣ୍ଣାନୁକ୍ରମିକ ରଚନାପାଇଁ ଏଗୁଡ଼ିକର ଭୂମିକା ରହିଥାଇପାରେ, କିନ୍ତୁ ବିଶ୍ୱର ବିଭିନ୍ନ ଭାଷା ସାହିତ୍ୟରେ ଏହି ପ୍ରକାର ବର୍ଣ୍ଣାନୁକ୍ରମିକ ରଚନାର ସନ୍ଧାନ ମିଳୁଥିବାଯୋଗୁଁ ଏହା ଯେ କବିର ବର୍ଣ୍ଣ-କ୍ରୀଡ଼ା-ବିଳାସ କୌତୂହଳ ସଂଜାତ, ନିଃସନ୍ଦେହ ।

ବାଇବେଲର Old Testament ର The Book of Psalms ର କେତେକ ସ୍ତୋତ୍ର (୩୪, ୩୫, ୧୧୧, ୧୧୯) ରେ ବର୍ଣ୍ଣାନୁକ୍ରମିକ ରୀତି ଅନୁସୃତ। ହିବ୍ରୁ ଭାଷାର ବାଇଶି ଗୋଟି ବ୍ୟଞ୍ଜନବର୍ଣ୍ଣକୁ କ୍ରମାନ୍ୱୟରେ ପାଦର ଆଦ୍ୟରେ ରଖି ୧୧୯ ସଂଖ୍ୟକ ସ୍ତୋତ୍ର ଲେଖାଯାଇଛି । ଏହାର ପ୍ରଭାବରେ ବୋଧହୁଏ ଚସର୍ ତାଙ୍କ 'An A.B.C." କବିତାରେ "A" ଠାରୁ ଆରମ୍ଭ କରି "Z" ପର୍ଯ୍ୟନ୍ତ ବର୍ଣ୍ଣମାଳାକୁ ପ୍ରତି ସ୍ତବକରେ ପ୍ରଥମ ପାଦର ଆଦ୍ୟରେ ରଖି ରଚନା କରିଛନ୍ତି । ଯଥା

"Almighty and alm erable queene,
To whom that all this world fleeth socour.
To have rulees of sinne, of sorwe, and teene,
x x x
Bountee so fix hath in thin harte his tente
That well wolt my socour been,
Thou canst not warne him that with good entente.
x x x
Comport is noon but in you, Ladi deere;
For, Loo, my sinne and my confusioun;
which oughteen not in thi presence appeere."

ସେହିପରି ଓ୍ୱାଟସନଂକ "The Seige of Belgrade" ରେ ମଧ ପ୍ରତ୍ୟେକ ପାଦରେ ଇଂରେଜୀ ଛବିଶିଟି ଅକ୍ଷରକୁ କ୍ରମାନ୍ୱୟରେ ସ୍ଥାନିତ କରାଯାଇଛି ଯଥା -

"An Austrian army, awefully arrayed,
Boldey by feattery besieged Belgrade;
Cossack commanders cannonading come;
Dealing destruction's devasting doom;"

ପାର୍ଶୀ ଓ ଆରବୀ ଭାଷାରେ ରଚିତ "ଦୀବାନ୍" ମଧ ଏହିପରି ଏକ ଅକ୍ଷର ନିୟମାତ୍ମକ ରଚନା । ପାର୍ଶୀ କବି ବାଦଗୀସ ଏବଂ ଆରବୀ କବି ହସାନ୍‌ବିନ୍ ସାବିତ୍ ଦୀବାନ୍ ରଚନାପାଇଁ ପ୍ରସିଦ୍ଧ । ଉର୍ଦ୍ଦୁ ସାହିତ୍ୟରେ ମଧ ଏହିପରି ବର୍ଣ୍ଣାନୁକ୍ରମିକ ଶୈଳୀରେ ରଚିତ ଦୀବାନ୍ ଦୁର୍ଲ୍ଲଭ ନୁହେଁ, କିନ୍ତୁ ସେହି ଭାଷାର ଲିଖନ ରୀତି ଆମ୍ଭମାନଙ୍କ ଲିଖନରୀତିର ବିପରୀତଯୋଗୁଁ ବର୍ଣ୍ଣାନୁକ୍ରମ ପାଦର ଶେଷରେ ଦେଖିବାକୁ ମିଳେ ।

ଭାରତୀୟ କବିମାନେ ମଧ ବର୍ଣ୍ଣବିନ୍ୟାସ କୌତୁକ ପ୍ରତି ବେଶ୍ ଆଗ୍ରହୀ ଥିଲେ । ବଙ୍ଗଳା ସାହିତ୍ୟରେ ମଙ୍ଗଳକାବ୍ୟ, ନାମାବଳୀ ଇତ୍ୟାଦି ରଚନାରେ "ଚୌତିଶା" ରଚନାର ପରିଚୟ ମିଳେ । ଏଗୁଡ଼ିକ ମୁଖ୍ୟତଃ ସ୍ତୁତିମୂଳକ । ନିଜ ସମ୍ପାଦିତ "ମଙ୍ଗଳଚଣ୍ଡୀର ଗୀତ"ର ଭୂମିକାରେ ସୁଧୀଭୂଷଣ ଭଟ୍ଟାଚାର୍ଯ୍ୟ ଲେଖିଛନ୍ତି, "ପ୍ରାଚୀନ ବାଙ୍ଗଲା ସାହିତ୍ୟେ ଚୌତିଶା ନାମେ ଏକ ପ୍ରକାର ରଚନାର ସାକ୍ଷାତ୍ ପାଓୟା ଯାୟେ । ଚୌତିଶାର ଅର୍ଥ 'କ' - କାରାଦି ୩୪ଶ ଅକ୍ଷରେ ଦେବତାର ସ୍ତୁତି । ବାଙ୍ଗଲା ସାହିତ୍ୟେ ଦୁଇଟି ଚୌତିଶା ବିଶେଷ ପ୍ରସିଦ୍ଧ ; ଏକଟି କାଲକେତୁର, ଅପରଟି ଶ୍ରୀମନ୍ତେର ।" ଦୁଇଟିଯାକ ଚୌତିଶା ଚଣ୍ଡୀ ମଙ୍ଗଳ କାବ୍ୟର ଅନ୍ତର୍ଭୁକ୍ତ । ମୁକୁନ୍ଦରାମଙ୍କ **କବି କଙ୍କଣଚଣ୍ଡୀ** ଓ ବ୍ରଜକିଶୋର ରାୟଙ୍କ **ମାତୃନାମାବଳୀ**ରେ ଏହି ପ୍ରକାର ରଚନାର ଉଦାହରଣ ମିଳେ । ସୈୟଦ ସୁଲତାନଙ୍କ **ଜ୍ଞାନଚୌତିଶା,** ଗଙ୍ଗାରାମଙ୍କ **ଗଙ୍ଗାରଚୌତିଶା, ରାଧାରଚୌତିଶା, ଶ୍ରୀକୃଷ୍ଣଚୌତିଶା** ବଙ୍ଗଳା ଭାଷାରେ ରଚିତ ଅନ୍ୟ କେତୋଟି ଅନୁରୂପ ରଚନା । ଅହମୀୟା ଭାଷାରେ ଏହା **ଚତିହା**। ଶଙ୍କରଦେବ ପ୍ରଥମ **ଚତିହା** ରଚୟିତା । ଓଡ଼ିଶା ସହିତ ଶଙ୍କର ଦେବଙ୍କ ସଂପର୍କ ଥିଲା ଅତ୍ୟନ୍ତ ନିବିଡ଼ । ତାଙ୍କ ମାଧମରେ ହିଁ ଆସାମ, ମଣିପୁର ପ୍ରଭୃତି ପୂର୍ବାଞ୍ଚଳ ରାଜ୍ୟରେ ରାଧାକୃଷ୍ଣ ଉପାସନା ଓ ଜଗନ୍ନାଥ ସଂସ୍କୃତିର ପ୍ରଚାର ଘଟିଛି ଏବଂ ପୁରୀ ଅବସ୍ଥାନ କାଳରେ ଶଙ୍କର ଦେବ ଓଡ଼ିଶାର ଏହି ଲୋକପ୍ରିୟ ଚୌତିଶା ପ୍ରରୂପ ପ୍ରତି ଆକୃଷ୍ଟ ହୋଇ ଆପଣା ଭୂମିକୁ ନେଇଛନ୍ତି ।

କବୀର ହିନ୍ଦୀ ସାହିତ୍ୟର ପ୍ରଥମ ଚଉତିଶାକାର । ପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ କାଳରେ ଚୌତିଶା ଆଙ୍ଗିକ ପ୍ରତି ସେ ଅନୁରାଗୀ ହୋଇଛନ୍ତି । ଅକ୍ଷର ନିୟମରେ ରଚିତ ହିନ୍ଦୀରେ ସମଧର୍ମୀ ଗୀତଗୁଡ଼ିକୁ **ବାବନୀ, ଚୌତିଶା** ବା **ଚଉତିଶା, କଖହରା, ଅଖରାବଟ, ବାରହଖଡ଼ି, ଛତିଶା** ଇତ୍ୟାଦି ନାମରେ ଅଭିହିତ କରାଯାଇଛି । ବାବନ ଅକ୍ଷର ବିଶିଷ୍ଟ ରଚନା **ବାବନୀ,** ଛତିଶଅକ୍ଷର ବିଶିଷ୍ଟ ରଚନା **ଛତିଆ** ନାମରେ ପରିଚିତ । ଏବଂ, ସେଥିରୁ 'ସ' ଓ 'କ୍ଷ' ଦୁଇଟି ଅକ୍ଷରକୁ ବାଦ୍‌ଦେଇ ଅନ୍ୟ ୩୪ଟି ଅକ୍ଷରର କ୍ରମାନ୍ୱୟୀ ରଚନା ହିଁ ଚଉତିଶା । କବୀର, ତୁଳସୀ ଦାସ, ଧରଣୀଧର ଦାସ, ମହାରାଜ ସିଂହ, ରାମସହାୟ ଦାସ ପ୍ରମୁଖ ବହୁ ଚଉତିଶା ବା କଖହରାର ସ୍ରଷ୍ଟା । ଗୁଜରାଟୀ ଓ ପଞ୍ଜାବୀ ଭାଷାରେ ଚଉତିଶା ଅନୁରୂପ ଅକ୍ଷର ନିୟମାତ୍ମକ ରଚନା, ଯଥାକ୍ରମେ କକ୍କ ବା ମାତୃକା ଏବଂ ବାବନଅକ୍ଷରୀ ନାମରେ ପ୍ରଚଳିତ । ପ୍ରାଚୀନ ସଂସ୍କୃତ ସାହିତ୍ୟରେ ଅବଶ୍ୟ ଏହି ପ୍ରକାର ବର୍ଣ୍ଣାଦ୍ୟ ଗୀତିକାର ସନ୍ଧାନ ମିଳେନାହିଁ । ମାତ୍ର ଗତ ଶତାବ୍ଦୀରେ ପଣ୍ଡିତ ରାୟ ଯତିରାଜ ଏବଂ ବିକ୍ରମଦେବ ବର୍ମା ସଂସ୍କୃତ ଚଉତିଶା ରଚନାକରି ଏହି ଅଭାବ ପୂରଣ କରିଛନ୍ତି ।

ବିଶ୍ୱର ବିଭିନ୍ନ ସାହିତ୍ୟରେ ବର୍ଣ୍ଣାଦ୍ୟ ନିୟମରେ ରଚିତ ଗୀତି, ସ୍ତୁତି, ସ୍ତୋତ୍ର ଇତ୍ୟାଦି ଦେଖିବାକୁ ମିଳୁଥିଲେ ହେଁ ଓଡ଼ିଆ ଭାଷାରେ ଏହାର ପ୍ରାଚୀନତା, ବିପୁଳତା ଓ ବିଚିତ୍ରତା ଅନନ୍ୟ । ପ୍ରାୟ ଅଷ୍ଟମ ଶତାବ୍ଦୀରୁ ଓଡ଼ିଆ କବିମାନେ ବର୍ଣ୍ଣାଦ୍ୟ ରଚନାର ପରଂପରା ସୃଷ୍ଟି କରିଥିବା ପ୍ରମାଣ ମିଳେ । ସିଦ୍ଧାଚାର୍ଯ୍ୟ ସରହପାଦ (ରାହୁଳଭଦ୍ର ବା ରୋଜବଜ୍ର) କ-ଖ ଦୋହାରେ ପ୍ରଥମେ ଏହି ନିୟମର ପ୍ରୟୋଗ କରିଛନ୍ତି । ଦୋହାଟି ରାହୁଳ ସାଙ୍କୃତ୍ୟାୟନ ସଂପାଦିତ "ସିଦ୍ଧ ସରହପାଦକୃତ ଦୋହାକୋଷ"ରେ ସ୍ଥାନିତ । ସରହପାଦଙ୍କ ଜନ୍ମ ପୂର୍ବଦେଶର କୌଣସି ଏକ ରାଜ୍ୟର ରାଜ୍ଞୀ ନାମକ ନଗର । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ମତରେ ଏହି ନଗର ବଲାଙ୍ଗୀର ଜିଲ୍ଲା ଅନ୍ତର୍ଗତ ରାଣୀପୁର-ଝରିଆଲ ହେବା ସମ୍ଭବ ।[୬] କାରଣ ବଜ୍ର ଓ ସହଜଯାନର ଆଦିସିଦ୍ଧ ଇନ୍ଦ୍ରଭୂତି ଓ ଲକ୍ଷ୍ମୀଙ୍କରା ଏହି ଅଞ୍ଚଳର ବ୍ୟକ୍ତିତ୍ୱ । ତାଙ୍କ ରଚନାଟି ଏହିପରି :

କ — କା କୂଳୀଶ ମଧେ ସ୍ଥିତ
ଖ — ଖା ଖ — ସମ ବସି ଲଲାଟ ଶୂନ୍ୟ...
ଗ — ଗା ଗମନ ଲାସ୍ୟ କରି ସ୍ଥୂଳକର...
ଘ — ଘା ଘନ ଘନ ଶ୍ରୀ ହେରୁ କମୁଦିତ...
ଙ — ଙ ନିଜ ସ୍ୱଭାବରେ ଶୂନ୍ୟ... ଇତ୍ୟାଦି । (ଅନୁବାଦ)

ସରହପାଦଙ୍କ ଠାରୁ ଆରମ୍ଭକରି ସାରଳା ଦାସଙ୍କ ପର୍ଯ୍ୟନ୍ତ ପ୍ରାୟ ଛଅ ଶହବର୍ଷ ମଧରେ ଏହି ପ୍ରକାର ଅନ୍ୟ ସୃଷ୍ଟିର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ । କିମ୍ବଦନ୍ତୀ କହେ, ରାମାୟଣ, ମହାଭାରତ ଇତ୍ୟାଦି ରଚନା ପୂର୍ବରୁ ଶୂଦ୍ରମୁନି ସାରଳା ଦାସ ବିଲରେ ହଳ କରୁଥିବା ବେଳେ କୌଣସି ଚଉତିଶାର କିଛି ପଦ ଗାନ କରୁଥିଲେ । କେହି କେହି ଏହାକୁ ମନାଇ (କହ୍ନାଇ) ଚଉତିଶା ବୋଲି କହିଥାନ୍ତି । ସାରଳା ମହାଭାରତରେ **କଳସା** ଶବ୍ଦର ଉଲ୍ଲେଖ ଏବଂ ଚାଟଶାଳୀଗୁଡ଼ିକରେ ଶିଶୁପାଠ୍ୟ ରୂପେ ପ୍ରଚଳିତ କେଶବକୋଇଲିକୁ ସାରଳା ପୂର୍ବବର୍ତ୍ତୀ ବୋଲି ସାଧାରଣତଃ ଗ୍ରହଣ କରାଯାଇଥାଏ । ଭାଷା, ଛନ୍ଦ ଦୃଷ୍ଟିରୁ ଏହାକୁ ସାରଳା ପୂର୍ବବର୍ତ୍ତୀ ବୋଲି ଗ୍ରହଣକରିବା ଅସମୀଚୀନ । ଦୀର୍ଘ ପାଞ୍ଚଶ ବର୍ଷ ମଧରେ ଏଗୁଡ଼ିକର ଭାଷା ଓ **ଛନ୍ଦ**ରେ ଅନୁଲେଖକ ଓ ମୁଦ୍ରାକାରମାନେ କି ପ୍ରକାର ପରିବର୍ତ୍ତନ କରିଛନ୍ତି, ଜାଣିବାର ଉପାୟ ନାହିଁ । କିନ୍ତୁ ଷୋଡ଼ଶ ଶତାବ୍ଦୀର ଆରମ୍ଭ ବେଳକୁ, ଚଉତିଶା ରଚନାକରି ବହୁ ସାଧକ ଓ କବି ସେଗୁଡ଼ିକୁ ଲୋକପ୍ରିୟ କରାଇଛନ୍ତି । ଫଳତଃ, ଶତାବ୍ଦୀର ଶେଷବେଳକୁ ଏଗୁଡ଼ିକର ଛନ୍ଦ ଓ ଗାୟନ ପ୍ରଣାଳୀକୁ ଖ୍ୟାତନାମା କବିମାନେ ନିଜ ନିଜ କାବ୍ୟରେ "ବାଣୀ" ରୂପେ ନିର୍ଦ୍ଦେଶ କରିଛନ୍ତି ; ଯେପରି **ରୁକ୍ମିଣୀଚଉତିଶା** (ରସକଲ୍ଲୋଳ ୨୫ ; **ବୈଦେହୀଶ ବିଳାସ** ୪୬), **ହଂସଦୂତ ଚଉତିଶା** (**ବୈଦେହୀଶ ବିଳାସ** ୪୪), **ଗୋପଜୀବନ ଚଉତିଶା** (**ବୈଦେହୀଶ ବିଳାସ** ୪୭) ବା **ଚଉତିଶା** (**ବିଚିତ୍ର ରାମାୟଣ** ଆଦ୍ୟ କାଣ୍ଡ), **ଉଦ୍ଧବ ଚଉତିଶା** (**ବିଚିତ୍ର ରାମାୟଣ** : ଲଙ୍କାକାଣ୍ଡ), **ନନ୍ଦାବାଈ ଚଉତିଶା** (**ବିଚିତ୍ର ରାମାୟଣ** : ଲଙ୍କାକାଣ୍ଡ), ଇତ୍ୟାଦି । ସପ୍ତଦଶ, ଅଷ୍ଟାଦଶ ଏବଂ ଊନବିଂଶ ଶତାବ୍ଦୀରେ ଶତ ନୁହେଁ, ଅର୍ଦ୍ଧସହସ୍ରାଧିକ ଚଉତିଶା ଜ୍ଞାତ ଓ ଅଜ୍ଞାତ କବି/ କବୟିତ୍ରୀଙ୍କଦ୍ୱାରା ରଚିତ । ଏକବିଂଶ ଶତାବ୍ଦୀରେ ମଧ କବିମାନେ ଚଉତିଶା ରଚନାରୁ ଓହରି ଯାଇନାହାନ୍ତି କିମ୍ବା ଚଉତିଶାର ଜନପ୍ରିୟତା କମି ନାହିଁ ।

ଚଉତିଶା ଜନପ୍ରିୟ ହେବାର ପ୍ରଧାନ କାରଣ, ବର୍ଣ୍ଣକ୍ରମିକ ରଚନାଯୋଗୁଁ ପାଠକମାନେ ଏହାକୁ ସହଜରେ ସ୍ମରଣ ରଖିପାରନ୍ତି । ଏଥିପାଇଁ ଅତୀତରେ ଚାଟଶାଳୀର ଅବଧାନମାନେ ଏଗୁଡ଼ିକୁ ଶିଶୁମାନଙ୍କ ବର୍ଣ୍ଣଶିକ୍ଷାପାଇଁ ବ୍ୟବହାର କରୁଥିଲେ । ଶୈଶବର ଏହି ଶିକ୍ଷା ପରବର୍ତ୍ତୀ କାଳରେ ସେମାନଙ୍କୁ ଚୌତିଶା ରଚନାପାଇଁ ପ୍ରେରଣା ଯୋଗାଇଥିବା ସ୍ୱାଭାବିକ । ଦୀର୍ଘକାବ୍ୟ ରଚନା ପ୍ରତିଭାଧର କବିମାନଙ୍କଦ୍ୱାରା ସମ୍ଭବପର । କିନ୍ତୁ ସାଧାରଣ ଶିକ୍ଷିତ ଓ ଭକ୍ତପାଇଁ ଚଉତିଶା ରଚନା କଷ୍ଟସାଧ ନୁହେଁ । ଏଥିପାଇଁ ବହୁ ଅଜ୍ଞାତ ଓ ସ୍ୱଳ୍ପଜ୍ଞାତ ଲେଖକଙ୍କ ଭକ୍ତି ରସାତ୍ମକ ଚଉତିଶାର ସଂଖ୍ୟା ଅପେକ୍ଷାକୃତ ଅଧିକ । ପୁଣି ଦୀର୍ଘ କାବ୍ୟ ରଚନା ପୂର୍ବରୁ ବିଦଗ୍ଧ କବିମାନେ ଚଉତିଶାକୁ 'ହାତବଳା' ରୂପେ ଅଭ୍ୟାସ କରିଛନ୍ତି ; କିମ୍ବା ଦୁଇଟି ଦୀର୍ଘ କାବ୍ୟ ରଚନାର ମଝିରେ ଗୋଟିଏ/ଦୁଇଟି ଚଉତିଶା ରଚନାକରି ସୃଜନଧାରାକୁ ଅବ୍ୟାହତ ରଖିଛନ୍ତି । ପୁନଶ୍ଚ ମାତ୍ର ୩୪ଟି ବ୍ୟଞ୍ଜନକୁ **ଅନୁଲୋମ ବିଲୋମ** ଭାବେ ବ୍ୟବହାର କରି ଆପଣାର ଶାବ୍ଦିକ କଳା କୌଶଳ ପ୍ରଦର୍ଶନପାଇଁ ଚଉତିଶାକୁ ସେମାନେ ମାଧମ କରିଛନ୍ତି ।

ଚଉତିଶାର ଏହି ଲୋକପ୍ରିୟତା ଓଡ଼ିଆ ସାହିତ୍ୟର ପ୍ରାୟ ସମସ୍ତ ବିଭାବକୁ ପ୍ରଭାବିତ କରିଛି । ଲୋକଗୀତିଠାରୁ ଆରମ୍ଭ କରି ପୁରାଣ ପର୍ଯ୍ୟନ୍ତ ଏହାର ପକ୍ଷ-ବିସ୍ତାର । ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତ ସିଂହାର, କେଶବରାଜ ହରିଚନ୍ଦନ, ପଦ୍ମନାଭ ଶ୍ରୀଚନ୍ଦନ, ଗୋପୀନାଥ ପାତ୍ର ପ୍ରମୁଖ ବିଶିଷ୍ଟ କାବ୍ୟକାର ନିଜନିଜ କାବ୍ୟର କେତୋଟି ଛାନ୍ଦକୁ ଚଉତିଶା ନିୟମରେ ନିବଦ୍ଧ କରିଛନ୍ତି । କୋଇଲି ଗୀତଗୁଡ଼ିକ ଚଉତିଶା ନିୟମ ରକ୍ଷାପାଇଁ ବାଧ ନହେଲେ ସୁଦ୍ଧା, ଅଧିକାଂଶ କବି ଏହି ନିୟମକୁ ଆଦରି ନେଇଛନ୍ତି । ଗଣପତି ନାଥଙ୍କ **ଚାଟବୋଲି**, ଦ୍ୱାରକା ଦାସଙ୍କ **ବାରବୋଲି ବୋଲି**, ଓଡ଼ିଆ ବୋଲି ଗୀତରେ ଚଉତିଶାର ପ୍ରଭାବକୁ ସୂଚାଇଥାଏ । **ଚିଟାଉ** ଓ **ସନ୍ଦେଶ** ଗୀତିଗୁଡ଼ିକ ମଧ ଚଉତିଶା ନିୟମଦ୍ୱାରା ବିଶେଷ ଭାବେ ପ୍ରଭାବିତ । ଉପେନ୍ଦ୍ରଭଞ୍ଜ, ବ୍ରଜସୁନ୍ଦର ପଟ୍ଟନାୟକ, ବିଷ୍ଣୁ ଦାସ ପ୍ରମୁଖଙ୍କ **ଚିଟାଉ** ଚଉତିଶାଗୁଡ଼ିକ ଏ ପ୍ରସଙ୍ଗରେ ଉଲ୍ଲେଖନୀୟ । ଓଡ଼ିଆ ଚମ୍ପୂଗୁଡ଼ିକ ଚଉପଦି-ଚଉତିଶା ମାତ୍ର । କୌଣସି ଜଗନ୍ନାଥ ଦାସ ଭାଗବତର ବିଷୟବସ୍ତୁକୁ 'ଅ' ଠାରୁ 'କ୍ଷ' ପର୍ଯ୍ୟନ୍ତ ପଞ୍ଚାଶବର୍ଣ୍ଣ ନିୟମାତ୍ମକ ଅଧାୟରେ ବିଭକ୍ତ କରି **ଶୂନ୍ୟ ଭାଗବତ** ପରି ଏକ୍ ପୁରାଣ ମଧ ରଚନା କରିଛନ୍ତି । ପ୍ରତ୍ୟେକ ଛାନ୍ଦକୁ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ବର୍ଣ୍ଣାଦ୍ୟ ନିୟମରେ ରଚିତ ଉପେନ୍ଦ୍ର ଭଞ୍ଜଙ୍କ **ଛାନ୍ଦଭୂଷଣ**, ଚନ୍ଦ୍ରଶେଖର ଭଞ୍ଜଙ୍କ ପ୍ରେମମଞ୍ଜରୀ, ଜଗନ୍ନାଥ ପାଣିଙ୍କ ପ୍ରମୋଦଚନ୍ଦ୍ରମଣି ପ୍ରଭୃତି କାବ୍ୟ ଚଉତିଶାର ସଂପ୍ରସାରିତ ରୂପ । କେବଳ ବିଦଗ୍ଧ ସାହିତ୍ୟ ନୁହେଁ, ଲୋକଗୀତି ଏବଂ ଲୋକନୃତ୍ୟଗୁଡ଼ିକୁ ମଧ ଚଉତିଶା ପ୍ରଭାବିତ କରୁଥିବା ଦୁର୍ଲ୍ଲକ୍ଷ ନୁହେଁ । **ରସରକେଳି ଚଉତିଶା**, **ହଳିଆ** ରାମାୟଣ, ଦଣ୍ଡନାଟର **ବାଣାକାର ଗୀତ**, **ଶଗଡ଼ିଆ ଗୀତ**ଗୁଡ଼ିକ ଚଉତିଶା ରୀତିରେ ରଚିତ ।

ଚଉତିଶାର ଆଦର, ପ୍ରାୟୋଗିକ ଉପଯୋଗିତା ବିଦଗ୍ଧ କବିମାନଙ୍କୁ ଏହାର ଆଙ୍ଗିକରେ ବୈଚିତ୍ର୍ୟ ସୃଷ୍ଟିକରିବାପାଇଁ ପ୍ରଲୋଭିତ କରିଛି । ସାଧାରଣ କବିମାନେ ସରଳଭାବେ ଚଉତିଶାମାନ ରଚନା କରିଥିବାବେଳେ, ବିଦଗ୍ଧ କବିମାନେ ବ୍ୟଞ୍ଜନଗୁଡ଼ିକର ଅନୁଲୋମ ବିଲୋମ ସ୍ଥାନାୟନକୁ ନେଇ ଚଉତିଶାର କଳେବରକୁ ବୈଚିତ୍ର୍ୟମଣ୍ଡିତ କରିଛନ୍ତି । ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ଏହି ଧାରା ଗତିଶୀଳ । ଏଠାରେ ଏହି ପ୍ରାରୂପର ବିଚିତ୍ରତା ସଂପର୍କରେ ଆଲୋଚନା କରାଯାଇପାରେ । ସେଗୁଡ଼ିକର ପ୍ରକାରଭେଦ ଏହିପରି ।

୧. କ୍ରମାନ୍ୱୟୀ ସର୍ବବ୍ୟଞ୍ଜନୀ ଚଉତିଶା - ଏହି ପ୍ରକାର ଚଉତିଶାରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକୁ କ୍ରମାନ୍ୱୟରେ ଅବ୍ୟାହତ ଭାବେ ବିନ୍ୟାସ କରାଯାଇଥାଏ । ଉପେନ୍ଦ୍ରଭଞ୍ଜଙ୍କ ନାମରେ ଏହି ପ୍ରକାର ଏକ ରଚନା ପ୍ରଚଳିତ । ପ୍ରକୃତରେ ଏହାର ପିତୃତ୍ୱ ବିତର୍କିତ । ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ ଉପେନ୍ଦ୍ର ଭଞ୍ଜ ତାଙ୍କର କୌଣସି ଭୃତ୍ୟକୁ ନୃତ୍ୟ ପ୍ରଦର୍ଶନ ପାଇଁ ଯାଗାଟିଏ ପ୍ରସ୍ତୁତ କରିବା ନିମିତ୍ତ କହିଥିଲେ, "କି ଖଗା ଘନେ ! ଚାଞ୍ଛ, ଜେଝା ନାଟ (ଯା ଝନ୍ଟ) ଠା । ଡଢ଼ ଅଣ ତଥି ଦଧି ନେ ପା, ଫବେ ଭୀମ ଜୋର, ଲବେ ଶଶା ସିଂହକ୍ଷ ।'' ଅର୍ଥାତ୍ ରେ ବାଁହାତିଆ ଘନ; (କି ଖଗାଘନେ) ନାଟର ଯେଉଁ ସ୍ଥାନ ତାହା ଯାଇ ଝଟ, ଅର୍ଥାତ୍, ଶୀଘ୍ର ଚାଂଛ ଅର୍ଥାତ୍ ସଫାକର । ଡଢ଼ ଅର୍ଥାତ୍ ଦହଡ଼ ବା ଗରମ ଅଣ ବା ଝୋଳମିଶା ଭୋଜନ ସାଙ୍ଗକୁ ଦହି ନେଇ ପାଅ ବା ପାନକର (ଡଢ଼ଅଣ ତଥି ଦଧି ନେପା) । ଉପଯୁକ୍ତ ଭାବେ ଖାଇଲେ ଭୀମପରି ବଳ ହେବ, ଭଲ ଖାଦ୍ୟ ମିଳିଲେ ଲବକରେ ଅର୍ଥାତ୍ ଅନାୟାସରେ ବା କ୍ଷଣକରେ ଶଶକ ମଧ ସିଂହର କ୍ଷତି କରିପାରିବ । କିମ୍ବଦନ୍ତୀଟି ଯଦି ସତ୍ୟ, ତା'ହେଲେ ଏହାକୁ ଓଡ଼ିଆ ଭାଷାରେ ରଚିତ ପ୍ରଥମ ସଂକ୍ଷିପ୍ତତମ ଚଉତିଶା ରୂପେ ଗ୍ରହଣ କରାଯିବ ।

ଏପ୍ରକାର ଏକ ରଚନାର ଉଦାହରଣ ଭୋଜଙ୍କ ଅଳଂକାରଗ୍ରନ୍ଥ **ସରସ୍ୱତୀକଣ୍ଠାଭରଣର** ଦ୍ୱିତୀୟ ପରିଚ୍ଛେଦରେ ଦେଖିବାକୁ ମିଳେ । ଶବ୍ଦାଳଂକାର ଆଲୋଚନା ଅବସରରେ ସେ "କ୍ରମସ୍ଥ ସର୍ବବ୍ୟଞ୍ଜନ'ର ଉଦାହରଣ ଦେବାକୁ ଯାଇ ଲେଖିଛନ୍ତି

କଃ ଖଗୌଘଙଚିଚ୍ଛିଜା ଝାଞ୍ଜ୍ଞୋଟୌଠୀଡ଼ଡ଼ଢ଼ଂଢ଼ଣଃ
ତଥୋଦଧୀନ୍ ପପଂର୍ବାଭିର୍ମୟୋରିଲ୍ୱାଶିଷାଂ ସହଃ ।।୩୬୪।।

**ସରସ୍ୱତୀକଣ୍ଠାଭରଣରେ** ପ୍ରଦତ୍ତ ବହୁ ଶବ୍ଦାଳଂକାର ଓ ଚିତ୍ରବନ୍ଧ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟଗୁଡ଼ିକରେ ଦେଖିବାକୁ ମିଳୁଥିବାଯୋଗୁଁ କିମ୍ୱଦନ୍ତୀର ସତ୍ୟତାକୁ ଅସ୍ୱୀକାର କରିହେବ ନାହିଁ । କିନ୍ତୁ **ସରସ୍ୱତୀକଣ୍ଠାଭରଣର** ଉଦାହରଣଟି ଶ୍ଳୋକନିବଦ୍ଧ । କବି ଉପେନ୍ଦ୍ରଭଞ୍ଜ ବକ୍ତବ୍ୟକୁ ପଦ୍ୟରେ ପ୍ରକାଶ ନ କରି ଗଦ୍ୟାୟିତ କରିଥିବାଯୋଗୁଁ ସଂଦେହ ହୁଏ । ଯାହାହେଉ, ଚଉତିଶାର ଏହି ସଂକ୍ଷିପ୍ତ ରୂପ ପରବର୍ତ୍ତୀ ସମୟରେ ଖଗେଶ୍ୱର ସେଠଙ୍କୁ ପ୍ରଭାବିତ କରିଛି । ସେ **ଗୁପ୍ତ ନିବେଦନ** କବିତାଟିକୁ କେଦାରଗୌଡ଼ା ରାଗରେ ଲେଖିଛନ୍ତି

କ ଖ ଗ ଘ ଉଅଁ ଚ ଛ ଜ ଝ ନିଅଁ
ଟ ଠ ଡ ଢ଼ ଅଣ ତ ଥ
ଦ ଧ ନ ପ ଫ ବ ଭ ମ ଯ ର ଳ ବ
ଶ ଷ ସ ହ କ୍ଷ ଶପଥରେ ଧ ନ । (ଖଗେଶ୍ୱର ଗ୍ରନ୍ଥାବଳୀ, ପୃ. ୩୨)

୨. ଶାବ୍ଦୀ ଚଉତିଶା :- ଏହି ଚଉତିଶାରେ ପ୍ରତ୍ୟେକ ପଦର ପ୍ରତ୍ୟେକ ଶବ୍ଦର ଆଦ୍ୟବର୍ଣ୍ଣ ରୂପେ ଅଭଙ୍ଗ ଓ ସଭଙ୍ଗ ଭାବରେ ବ୍ୟଞ୍ଜନ ବର୍ଣ୍ଣମାଳା କ୍ରମାଗତ ଭାବରେ ବ୍ୟବହୃତ ହୁଏ,

କଳାବତୀ ଖଞ୍ଜନାକ୍ଷୀ ଗୁରୁ - ନିତମ୍ବିନୀ
ଘନକେଶୀ ଉରୁଶୋଭୀ ଚମ୍ପକବରନୀ
ଛାନ୍ଦ ପଠିନୀ ରେ ।।
ଜଳଜବାସିନୀ ଝୀନବସନି ନବୀନା
ଟେକସ୍ତନା ଠଣମୁଖୀ ଡାଳିମ୍ୱଦଶନା
ଢ଼ଗବଚନା ରେ ।।
ଅରୁଣାଧରୀ ତରୁଣୀମଣି ଥିରଗତି
ଦରଭାଷୀ ଧୀରାହୀରା ନବରସବତୀ
ପ୍ରୀତିମୂରତି ରେ ।।
ଫୁଲକୋମଳା ବିବିଧବିଳାସମଣ୍ଡନା
ଭାବମୟୀ ମୋତିଦନ୍ତୀ ଯତିଧୈର୍ଯଘେନା
ରସବର୍ଦ୍ଧନା ରେ ।।
ଲାବଣ୍ୟନିଧି ବିଚିତ୍ରବେଶମନୋହରା
ଶଚୀପତିଶିରୀଦାୟୀ ସ୍ମରଦର୍ପହରା
ସିଦ୍ଧିପସରାରେ ।।
ହାସ-ମଞ୍ଜୁଳା ହୃଦୟ ତାପ-ଧ୍ୱଂସକରା
କ୍ଷଣଦାକାନ୍ତି ତୁ ବନମାଳୀ- ଦିନ ସରା
କ୍ଷମାସାଗରା ରେ । (ବନମାଳୀ ପଦ୍ୟାବଳୀ)

୩. ଆଦ୍ୟା ଚଉତିଶା :- ଏହାର ପ୍ରତ୍ୟେକ ପଦର ଆଦ୍ୟରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଚଉତିରିଶଟି ବର୍ଣ୍ଣ କ୍ରମିକ ଭାବେ ବିନ୍ୟସ୍ତ ହୋଇଥାଏ । ଓଡ଼ିଆ ଚଉତିଶାର ଏହା ମୌଳିକ, କବିପ୍ରିୟ ଓ ବହୁ ପ୍ରଚଳିତ ରୀତି ।

କହନ୍ତି କାମିନୀ କହ ହେମନ୍ତ ଦୁଲଣି
କାହୁଁ ବରେ ବରିଲେ ତୁମ୍ଭର ପିତାମଣି
କୁଳ ମୂଳ ଗୋତ୍ର ଆଦି ନାହିଁ ଜଣା ତାର
କନକ ବେଦୀରେ ବୁଢ଼ା ବସିଛି ମଧର ।୧। **ବସ୍ଥା (ବଂଶୀ) କଳସା ଚଉତିଶା**

୪. ପାଦାଦ୍ୟା ଚଉତିଶା :- ଯେଉଁ ରଚନାର ପ୍ରତ୍ୟେକ ପଦର ପ୍ରତ୍ୟେକ ପାଦର ଆଦ୍ୟ ଅକ୍ଷର ରୂପେ କ, ଖ ପ୍ରଭୃତି ଚଉତିରିଶଟି ବ୍ୟଞ୍ଜନ କ୍ରମବିନ୍ୟସ୍ତ, ତାହା ପାଦାଦ୍ୟା ଚଉତିଶା । ଆଦ୍ୟା ଓ ପାଦାଦ୍ୟା ମଧ୍ୟରେ ପାର୍ଥକ୍ୟ ଏହି ଯେ, ଆଦ୍ୟାର ଗୋଟିଏ ପଦର ସମସ୍ତ ପାଦର ଆଦ୍ୟରେ ବର୍ଣ୍ଣମାଳାର ଗୋଟିଏ ବ୍ୟଞ୍ଜନ ବର୍ଣ୍ଣ ବ୍ୟବହୃତ ହୁଏ; କିନ୍ତୁ ପାଦାଦ୍ୟାରେ ପ୍ରତ୍ୟେକ ପାଦର ଆଦ୍ୟରେ କ, ଖ ଇତ୍ୟାଦି ବର୍ଣ୍ଣ କ୍ରମାନୁସାରେ ପ୍ରଯୁକ୍ତ ହୋଇଥାଏ ।

କନକଶମ୍ଭୁ କୁଚେ ଚିତ୍ତ ଥାଉ
ଖଞ୍ଜନନେତ୍ରୀ ଛାମୁକୁ ଚିଟାଉ
ଗୋରୀ ତୋ ଶ୍ରୀମୁଖ ଦେଖିଲା ଦିନୁ
ଘଡ଼ିଏ ଅନ୍ତର ନୋହଇ ମନୁ
ନିଶ୍ଚେ ଏହି ଧ୍ୟାନ
ଚନ୍ଦ୍ରବଦନୀ ମୁଁ ତୋର ଅଧୀନ ।। **ଉପେନ୍ଦ୍ର ଭଞ୍ଜ : ଚିଟାଉ ଚଉତିଶା**

୫. ଏକ ପାଦାଦ୍ୟା ଚଉତିଶା :- ଏହାର ପ୍ରତ୍ୟେକ ପଦରେ ଯେତେଗୋଟି ପାଦ ଥିଲେ ମଧ ପ୍ରତ୍ୟେକ ପଦର ପ୍ରଥମ ପାଦର ପ୍ରଥମ ଅକ୍ଷର ରୂପରେ କ, ଖ, ଆଦି ୩୪ଟି ବ୍ୟଞ୍ଜନ ବର୍ଣ୍ଣ କ୍ରମାନୁଯାୟୀ ବିନ୍ୟସ୍ତ ହୋଇଥାଏ।

କହଇ ସୁନ୍ଦରୀ ଶ୍ରେଷ୍ଠ ଭାବ ବହି
ଓଲଟ ତରୁମୂଳେ ସଦାନନ୍ଦ ରହି
ଓଲଟ ତରୁମୂଳେ ତ୍ରିବେଣୀର ଧାର
ସତ୍ତ୍ୱ ରଜ ତମ ଏହି ତିନି ଯେ ପ୍ରକାର
ଉଜାଣି କମଳ ଯେ ଉପରକୁ କର
ହୋଇଅଛି କମଳେ ମୁଦ୍ରିତ ଭ୍ରମର
ମୁଦ୍ରିତ କମଳେ ହୋଇଲାକ ଯେବେ
ମୃତ୍ୟୁ ଦେବତା ଛାରରେ ଯୋଗେନ୍ଦ୍ର କି କରିବ ତେବେ ରେ ।। **ଯୋଗୀନ୍ଦ୍ର ଚଉତିଶା : ଯୋଗୀନ୍ଦ୍ର**

୬. ତ୍ରିପାଦାଦ୍ୟା ଚଉତିଶା :- ଏହି ଚତୁଷ୍ପାଦ ବିଶିଷ୍ଟ ଚଉତିଶାର ପ୍ରତ୍ୟେକ ପଦର ପ୍ରଥମ ତିନିପାଦରେ ପ୍ରଥମ ଅକ୍ଷର ରୂପେ କ, ଖ, ପ୍ରଭୃତି ୩୪ଟି ବ୍ୟଞ୍ଜନ ବର୍ଣ୍ଣ କ୍ରମାନୁସାରେ ବିନ୍ୟସ୍ତ ହୋଇଥାଏ ଏବଂ ପ୍ରତ୍ୟେକ ପଦର ଚତୁର୍ଥ ପାଦ ସମାନ ରହି ସଙ୍ଗୀତର ଘୋଷା ଭଳି ଉଚ୍ଚାରିତ ହୁଏ । ଏହା ସଂସ୍କୃତ ସ୍ତୋତ୍ର ଶୈଳୀର ଅନୁରୂପ ଏବଂ ସମଜାତୀୟ ଚଉତିଶାରେ ବ୍ୟବହୃତ ।

କୃଷ୍ଣ ଗୋବିନ୍ଦ ଗୋପାଳ ନରହରି । କଂଜଲୋଚନ ମାଧବ ଦଇତାରି ।।
କମଳାକାନ୍ତ କେଶବ ବସୁଧାରୀ । ପ୍ରଣମାମି ସଦା ରାମକୃଷ୍ଣ ହରି ।।
ଖୋଜି ନ ପାନ୍ତି ଶୁକ ସୌନକ ମୁନି । ଖେଳେ ବନେ ଗୋପସୁତ ବସ୍ତା ଘେନି ।
ଖେଳି ରସେ କଂସ ଅଷ୍ଟ ମଲ୍ଲ ମାରି । ପ୍ରଣମାମି ସଦା କୃଷ୍ଣ ରାମ ହରି ।। (କୃଷ୍ଣ ରାମହରି ଚଉତିଶା)

୭. ପାଦାଂଶାଦ୍ୟା ଚଉତିଶା :- ପ୍ରତ୍ୟେକ ପଦର ପ୍ରତ୍ୟେକ ପାଦର ପ୍ରତ୍ୟେକ ପାଦାଂଶ ଅର୍ଥାତ୍ ଯତିଖଣ୍ଡର ଆରମ୍ଭରେ ବର୍ଣ୍ଣମାଳାର କ୍ରମବିନ୍ୟାସପୂର୍ବକ ଯେଉଁ ଚଉତିଶା ରଚିତ ହୋଇଥାଏ, ତାହାକୁ ପାଦାଂଶାଦ୍ୟା ଚଉତିଶା କୁହାଯାଏ ।

କମ୍ବୁ ରଥାଙ୍ଗକର ! ଖଳ ପାଷାଣ୍ଡଙ୍କର
ଗର୍ବାଭିମାନ ଦମ୍ଭହାରି !
ଘନ ଅଘନାଶନ ! ଉରଗାରିଆସନ !
ଚରଣ ତଳେ ଏ ଗୁହାରି, ହେ ଛପାଧନ !
ଜନ୍ମ ମରଣ ଅଧିପତି ଝଂଝଟ ଅଗତିର ଗତି
ନିର୍ଦ୍ଦୋଷ ତ ମହିମା ଟପାପାରୁ ହେ ସୀମା
ଠକି ନ ପାରେ ମୋ ବିପତ୍ତି ହେ । **ଜଣାଣ ଚଉତିଶା : ଖଗେଶ୍ୱର ସେଠ**

୮ ଅନ୍ତ୍ୟା ଚଉତିଶା :- ଏହାର ପ୍ରତ୍ୟେକ ପଦର ପ୍ରତ୍ୟେକ ପାଦର ଶେଷ ବା ଅନ୍ତରେ ବର୍ଣ୍ଣମାଳାର କ୍ରମବିନ୍ୟାସ ହୋଇଥାଏ । ଯଥା

ସତୀ ସରସ୍ୱତୀ ଶିବା ଶୋଭାବତୀ ରଖ ସାରସ୍ୱତ ଧର୍ମ ଟେକ
ତୋହ କୃପା ବିନା ଗଢ଼ିପାରିବିନା ସରସ ସାର୍ଥକ ପଦ ଏକ;
କାବ୍ୟ ଆଲୋଚନେ, ଚକ୍ଷୁ ନୋହୁ ଧୀର ଚକ୍ର ବେକ
ଦେବି ମୋ ହୃଦୟ - କମଳେ ଉଦୟ କର ଯମକାଦି ବୃତ୍ତି ଛେକ । **ଖଗେଶ୍ୱର ସେଠ**

୯. ଆଦ୍ୟ ସମବର୍ଣ୍ଣୀ ଅନ୍ତ୍ୟା ଚଉତିଶା :- ଯେଉଁ ରଚନାର ପ୍ରତିପାଦର ଆଦ୍ୟରେ ଥିବା ଅକ୍ଷରଗୁଡ଼ିକ ସମାନ ରହି ପ୍ରତି ପଦର ପ୍ରାନ୍ତରେ ଚଉତ୍ରିଶ ଗୋଟି ବ୍ୟଞ୍ଜନ ବର୍ଣ୍ଣର ଆନୁକ୍ରମିକ ବିନ୍ୟାସ ହୋଇଥାଏ, ତାହା ଆଦ୍ୟା ସମବର୍ଣ୍ଣୀ ଅନ୍ତ୍ୟା ଚଉତିଶା । ଉପେନ୍ଦ୍ର ଭଞ୍ଜଙ୍କ "ରସପଞ୍ଚକ" ର 'ର- କାର ଚଉତିଶା', 'ସ-କାର ଚଉତିଶା', 'ପ-କାର ଚଉତିଶା', 'ଚ-କାର ଚଉତିଶା' ଓ 'କ- କାର ଚଉତିଶା' ରେ ଏହି ପ୍ରକାର ରୀତି ଅନୁସୃତ । ବର୍ଣ୍ଣାଦ୍ୟ ନିୟମରେ ରଚିତ କାବ୍ୟ ବା ଦୀର୍ଘରଚନା ମଧ୍ୟରେ ଅନ୍ତର୍ଭୁକ୍ତ ଚଉତିଶା ପାଇଁ ଏହା ଏକ କାବ୍ୟିକ କୌଶଳ

ଚତୁର ରସିକ କବି ବିବୁଧ ବୁଧ ମେଧାବୀ
ଶୁଣ ପୁଣ ମନ କରି ଏକ ଯେ ।
ଚନ୍ଦ୍ରକ ଚନ୍ଦ୍ରକଧର ସାର ସାରସକୁମର
କରଇ ଯେମାନ ସନ୍ତୋଷକ ଯେ ।।
ଚମ୍ପା ଆଦି ଶାଖୀ ଲତା ଗୁଳ୍ମ କୁସୁମ ରହିତା
ଅକାଳେ ହେବାକୁ ପୁଷ୍ପମୁଖୀ ଯେ ।
ଚାରିଜାତି ନିତମ୍ବିନୀ ପ୍ରଧାନ ଯେ ହୋଏ ଘେନି
ଭାନୁ ହୋଇ ଦୋହଦ ସୁମୁଖୀ ଯେ ।। ରସ ପଞ୍ଚକ

୧୦. ପ୍ରାନ୍ତ ସମବର୍ଣ୍ଣୀ ପାଦାଦ୍ୟା ଚଉତିଶା :- ଏହି ପ୍ରକାର ଚଉତିଶାର ୩୪ଟି ପାଦର ପ୍ରତି ପ୍ରାନ୍ତ ବର୍ଣ୍ଣ ସମାନ ।

କରୁଣା ସାଗର ଜଗୁନାୟକ
ଖଟଣି ସେବାରେ ଜଗତ ଯାକ ।
ଗଉତମ ନାରୀ ପାଦେ ତାରେକ
ଘର ସବୁଦିନେ କମ୍ବୁ କଟକ ।
ନୟନ ପିତୁଳି କାମ ସାୟେକ
ଚାରୁ କପୋଳେ ଚନ୍ଦନ ତିଳେକ । **କରୁଣାସାଗର ଚଉତିଶା : ସାନନ୍ଦ**

୧୧. ଆଦ୍ୟାନ୍ତ୍ୟା ଚଉତିଶା :- ଏଥିରେ ପାଦଗୁଡ଼ିକର ପ୍ରଥମ ଓ ଶେଷ ଅକ୍ଷର ରୂପେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଚଉତିରିଶିଟି ବର୍ଣ୍ଣ କ୍ରମାଗତ ଭାବରେ ବିନ୍ୟସ୍ତ ହୋଇଥାଏ ।

କଞ୍ଚନାର ମାଳା ନାହିଁ ଏଥି, ଅଚ୍ଛ
ବର୍ଷର ଘଟଣା ଏକ
କରିବାକୁ ଗ୍ରାମ ଜିଲ୍ଲା ନାମୋଲ୍ଲେଖ
ବାରେ କବିର ବିବେକ ।
ଖସାଏ କୁକୃତ୍ୟ କୁକର୍ମକୁ କେହ୍ନେ
ତା ପ୍ରମାଣ ଏ ଆଲେଖ୍ୟ
ଖଣ୍ଡ ବୁଦ୍ଧି ଯୋଗେ ଖଳ କି ନ ଭୋଗେ
ଆଶ୍ରି ଭଣ୍ଡ ଭଦ୍ର ଭେଖ ।। **ଖଗେଶ୍ୱର ସେଠ**

୧୨. ଦ୍ୱିପାଦ ବର୍ଣ୍ଣାଦ୍ୟ ଚଉତିଶା :- ଚାରିପାଦବିଶିଷ୍ଟ ଏକପଦର ଦୁଇ ଦୁଇଟି ପାଦରେ କ୍ରମାନ୍ୱୟରେ ଦୁଇଟି ବ୍ୟଞ୍ଜନ ବର୍ଣ୍ଣାଦ୍ୟ ଶବ୍ଦ ବିନ୍ୟାସ ପୂର୍ବକ ୩୪ଟି ବ୍ୟଞ୍ଜନ ବର୍ଣ୍ଣର କ୍ରମିକ ବ୍ୟବହାର କରି କିଛି ଚଉତିଶା ରଚିତ ।

କଳିଯୁଗ ରବି ତଳେ ବିଜୟ କରତା
କରୁଣା କଟାକ୍ଷେ ଭକ୍ତେ କରାଇଲେ ଚେତା, କ୍ଷମାନିଧି
କ୍ଷିତି ମଧ୍ୟେ କଲେ ସର୍ବ ସିଦ୍ଧି ।।
ଗୋଲୋକ ବୈକୁଣ୍ଠ ନାଥ ଗରୁଡ଼ ଆସନ
ଗୁରୁ ବୁଦ୍ଧ ଅବତାରେ ପଚାରିଲେ ଜ୍ଞାନ, ଘୋଷ ମୁଖେ
ଘୋର ସଂସାରୁ ତରିବ ସୁଖେ ।। **କଳିଯୁଗ ଚରିତମ୍**

୧୩. ଯୁଗ୍ମପଦ ଚଉତିଶା :- କେତେକ ଚଉତିଶା ଅଠଷଠି ପଦିଆ । ଚଉତିଶାରେ ଗୋଟିଏ ଗୋଟିଏ ବର୍ଣ୍ଣ ଦୁଇ ଦୁଇଟି ପଦର ପାଦ୍ୟରେ ବିନ୍ୟାସ କରାଯାଇଥାଏ । ଫଳରେ ଏହାର ପଦସଂଖ୍ୟା ଚଉତ୍ରିଶର ଦୁଇଗୁଣ ହୋଇଯାଏ । ଦନାଇ ଦାସଙ୍କ "ଭଲମନ୍ଦ ଚଉତିଶା" ଏହାର ଅନ୍ୟତମ ଦୃଷ୍ଟାନ୍ତ ।

କୃଷ୍ଣ ଭକ୍ତ ଅଂଶ, କେତକୀର ବାସ, କୀରତିର ଯଶ,
କହିବା କଥା ହରଷ, ସଖି ଭଲ ଏ ।।
କୁଥାନେ ବାସ, କାଳୁଆ ମନୁଷ୍ୟ, କଥା ପରିହାସ,
କରିବା କଳୁଷ, ସଖି ମନ୍ଦ ଏ ।। (୧୫)

୧୪. ବିଲୋମ ଚଉତିଶା :- 'କ୍ଷ' ଠାରୁ 'କ' ପର୍ଯ୍ୟନ୍ତ ବ୍ୟଞ୍ଜନ ବର୍ଣ୍ଣମାଳାକୁ ବିଲୋମ ବା ବିପରୀତ କ୍ରମରେ, ଚରଣର ଆଦ୍ୟରେ ବିନ୍ୟାସ କରି କବିମାନେ ଚଉତିଶା ରଚନା କରିଛନ୍ତି । ଏହି ଚଉତିଶା ଗୁଡ଼ିକରେ ପ୍ରଥମ ପଦ 'କ୍ଷ', ଦ୍ୱିତୀୟ ପଦ 'ହ' ଓ ଏହି କ୍ରମରେ ତେତିଶ ପଦ 'ଖ' ଓ ଚଉତ୍ରିଶ ପଦ ହେଉଛି 'କ' । ଭୀମ ଭୋଇ, ଜୟକୃଷ୍ଣ, ଗଦାଧର ଓ ଦ୍ୱିଜ ମୋହନଙ୍କ ଚଉତିଶାରେ ଏ ରୀତି ଅନୁସୃତ ।

**କ୍ଷୀ**ରୋଧି-ସୁତା-ପତି ପତିତ ଜନ ଗତି
ରତିପତିରେ ମତି ଭଳି
**କ୍ଷ**ପାକର ବଦନୀ କୁନ୍ଦରଦନୀ ବୃଷ-
ଭାନୁ-ନନ୍ଦିନୀ ଗୁଣ ଗୁଣି ସେ
ବନମାଳୀ
**ଛ** ଛନ୍ଦେ ଦିନେ ମଧୁପୁରେ
**କ୍ଷୀ**ରେନ୍ଦୁ ସମ ମଣ୍ଡୋପରେ
**କ୍ଷ**ପାକର କିରଣ କୁସୁମ ବନିକାରେ
ଏମନ୍ତ ବିଚାରି ମନରେ ସେ ।।
**ହ**ରିଣ ବିଲୋକନା ମତ୍ତ ପିକ ବଚନା
ଛାମୁରେ ଏ ମୋର ବେଦନା
**ହୋ**ଇ ଏକାନ୍ତ କାନ୍ତ ଉଦନ୍ତ କାନ୍ତା ଆଗେ
କେହୁ କହିବ ନିବେଦନା ସେ
ବନମାଳୀ
ହୃଦରେ ବିଚାରି ଏମନ୍ତ
ହଂସକୁ ଦେଖିଲେ ଅଗ୍ରତ
ହୋଇ ହରଷ ହଂସ- ଗମନୀକି ଉଦେଶ
କହନ୍ତି ଏମନ୍ତ ଉଦନ୍ତ ସେ ।। ହଂସ ଦୂତ ଚଉତିଶା

୧୫. ପ୍ଳୁତା ବା ମେଷଯୁଦ୍ଧ ଚଉତିଶା :- ଓଡ଼ିଆ ବର୍ଣ୍ଣମାଳାର ପ୍ରଥମ ବର୍ଣ୍ଣ 'କ' ପରେ ଶେଷ ବର୍ଣ୍ଣ 'କ୍ଷ': ଦ୍ୱିତୀୟ ବର୍ଣ୍ଣ 'ଖ' ପରେ ୩୩ଶ ବର୍ଣ୍ଣ 'ହ' - ଏହି କ୍ରମରେ ପ୍ରତି ଚରଣର ଆଦ୍ୟରେ ବର୍ଣ୍ଣ ବିନ୍ୟାସ "ପ୍ଳୁତା ଚଉତିଶା' ର ବୈଶିଷ୍ଟ୍ୟ । 'କ' ଠାରୁ 'ଥ' ଏବଂ 'କ୍ଷ' ଠାରୁ ହ ପର୍ଯ୍ୟନ୍ତ ସତରଟି ଲେଖାଏ ଅକ୍ଷର ପରସ୍ପର ସମ୍ମୁଖୀନ ଗତି ଭଳି "କ୍ରମ -ବିପରୀତ-କ୍ରମ" ରୀତିରେ ଏକାନ୍ତର ଭାବେ ବିନ୍ୟସ୍ତ । କବି ଶ୍ୟାମଘନ ଆପଣା ରଚିତ ଏକ ଅନୁରୂପ ଚଉତିଶାର ନାମ ଦେଇଛନ୍ତି 'ମେଷ -ଯୁଦ୍ଧ ଚଉତିଶା' ।

**କୃ**ଷ୍ଣ ଗୁଣ ଗୁଣି ସର୍ବ ଆଭୀର ନାଗରୀ
**କା**ମ ଶରେ ଦିନୁ ଦିନୁ କୃଶ କୃଶୋଦରୀ
**କୁ**ଞ୍ଜ-କେଳି-କଳା-କଳା ଚିତ୍ତୋଇ ମନର
**କ**ରନ୍ତି ରୋଦନ ସେହୁ ବସି ନିରନ୍ତର ।।୧।
**କ୍ଷ**ଣକ ହି ଲକ୍ଷ ଲକ୍ଷ ଯୁଗ ପ୍ରାୟେ ମଣି
**କ୍ଷୋ**ଭ ଲଭୁଥାନ୍ତି ଏକା କୃଷ୍ଣ ଗୁଣ ଗୁଣି
**କ୍ଷ**ଣଦାକର କିରଣ ଲାଗିଣ ଅଙ୍ଗରେ
**କ୍ଷୀ**ଣ ହୋଏ କମଳିନୀ ଯେମନ୍ତ ପ୍ରକାରେ ।।୨।।

୧୬. ଓଲଟ ପ୍ଳୁତା ଚଉତିଶା :- ଉପର୍ଯ୍ୟୁକ୍ତ ରଚନା ରୀତିର ଓଲଟ ବା ବିପରୀତ ରୀତି ଅର୍ଥାତ୍ 'କ୍ଷ' ପରେ 'କ' 'ହ' ପରେ 'ଖ' - କ୍ରମରେ ରଚିତ ଚଉତିଶା **ଓଲଟ ପ୍ଳୁତା ଚଉତିଶା** ।

୧୭. ଓଲଟ ପାଦାଦ୍ୟା ଚଉତିଶା :- ଯେଉଁ ରଚନାରେ ଗୋଟିଏ ଗୋଟିଏ ପଦର ପ୍ରତ୍ୟେକ ପାଦର ଆଦ୍ୟ ଅକ୍ଷର ରୂପେ କ୍ଷ, ହ, ସ, ଶ, ଷ ପ୍ରଭୃତି ୩୪ଟି ଅକ୍ଷର କ୍ରମବିନ୍ୟସ୍ତ ହୋଇଥା'ନ୍ତି, ତାହା ଓଲଟ ପାଦାଦ୍ୟା ଚଉତିଶା ।

**କ୍ଷ**ମାନିଧି ତାକୁ ଦୟା କରନ୍ତି
**ହୃ**ଦ ପଦ୍ମେ ତାର ନଥାଇ ଭୀତି ।
**ଶୂ**ରଗଣେ ତାକୁ ଦେଖିଲେ ଡରି
**ସା**ରସ୍ୱତ ବ୍ରହ୍ମ ତା'ଠାରେ ପୂରି
**ମ**ନ ହେ ! **ଶୂ**ନ୍ୟ ଅଟେ ସ୍ୱରୂପ
**ବ**ଟ ମୂଳେ ଲୀଳା ଅରୂପ ରୂପ ।।

୧୮. ଆଦ୍ୟ - ପ୍ରାନ୍ତ - ସମାକ୍ଷର - ପ୍ଳୁତା ଚଉତିଶା :- ଏ ପ୍ରକାର ଚଉତିଶାରେ 'କ' ପରେ 'କ୍ଷ', 'ଖ' ପରେ 'ହ'-କ୍ରମ ଅନୁସୃତ ଏବଂ ପଦର ପ୍ରତି ପାଦର ଆରମ୍ଭ ବର୍ଣ୍ଣ ସହ ଅନ୍ତ୍ୟ ବର୍ଣ୍ଣ ସମାନ ରହିଥାଏ ।

**କା**ନ୍ତା ମୋ କାନ୍ତି ବିଜିତ କେତକୀ
**କ**ଟାକ୍ଷ ତାର ମାର ନିକେତ କି
**କା**ଳ ଜାଣି ସେବିଥିଲେ ଯେ ତାକୁ
X X X
କହୁଛି ଏତେକ
**କ**ହ ସୁଦତୀକି ଦୂତୀ ବାରେକ ।।
**କ୍ଷି**ତି ମଣ୍ଡଳ ମଣ୍ଡନ ମଣ୍ଡଳ ମୃଗାକ୍ଷୀ
**କ୍ଷ**ମାକରୁ ମୋ ଦୋଷ କ୍ଷୀଣକୁକ୍ଷୀ
**କ୍ଷୋ**ଭ ନ ଘେନୁ ତରଳ କଟାକ୍ଷ
**କ୍ଷ**ଣେ ତା ବିନୁ ମୋର ନାହିଁ ରକ୍ଷା
**କ୍ଷୁ**ଦ୍ରଶର ଲକ୍ଷ
**କ୍ଷ**ଣେ କ୍ଷଣେ ମାରେ ହର ବିପକ୍ଷ ।। **ଗୋକୁଳ**

୧୯. ଆଦ୍ୟ -ବିପରୀତାନ୍ତ୍ୟା ଚଉତିଶା :- ଏହି ଚଉତିଶାର ଚଉତିରିଶଟି ପଦର ପ୍ରତ୍ୟେକ ପାଦର ଆଦ୍ୟରେ 'କ୍ଷ' ଠାରୁ 'କ' ଏବଂ ପ୍ରତ୍ୟେକ ପାଦର ଶେଷରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ବ୍ୟଞ୍ଜନ ବର୍ଣ୍ଣମାଳା ଉପରୁ ତଳକୁ ଓ ତଳରୁ ଉପରକୁ ଓଲଟା ବା ବିପରୀତ କ୍ରମରେ ବିନ୍ୟସ୍ତ ।

**କ୍ଷ**ଣ ଭଙ୍ଗୁର ଜୀବନେ ଜଣାଏ ରଚ**କ**
**କ୍ଷ**ଣେ ଏ ସୂଚନା ଛାନ୍ଦେ ହୁଅ ଆଲୋଚ**କ**
**କ୍ଷ**ମ ଭାବୁକ ହେ ।
**ହୁ**ଏ ମୋ ଆଶା, ଏ "କଳାକୁଞ୍ଜ" କାବ୍ୟଲେ**ଖା**
**ହେ**ବ ରସଗ୍ରାହୀ ହୃଦଘନେ ବିଦ୍ୟୁଲେ**ଖା**
ହୃଦ୍ୟ ସୁମୁଖ ହେ ।

ସଂଖ୍ୟା ଷୋଳ ଛାନ୍ଦ ବର୍ଣ୍ଣେ ଚଉତିଶା-ରଂଗ
ସୂଚାଇବ ନିୟମାଦି ବିଷୟ ପ୍ରସଂଗ
ସୁଧୀ ସରାଗ ହେ ।। **ଖଗେଶ୍ୱର ସେଠ : ସୂଚନା**

**୨୦. ଶୃଙ୍ଖଳାବଦ୍ଧ ଚଉତିଶା** :- ଗୋଟିଏ ପାଦର ଶେଷ ଦୁଇ ଅକ୍ଷର ପର ପାଦର ଆରମ୍ଭରେ ପୁନରାବୃତ୍ତି, ଏହି ଚଉତିଶାର ଲକ୍ଷଣ ।

କୁନ୍ଦକଳିକାରଦନି ପ୍ରାଣମଣି ତେଜ ତୁ ମାନ ନିକର
କର ଅନୁଗ୍ରହ ମୋରେ ମନ୍ଦହାସୀ ନୋହିଣ ପ୍ରାୟେ ପ୍ରଖର
ଖର ନିଃଶ୍ୱାସ ସଂତତେ ତେଜୁଅଛି ମହୀତଳ ନିରେଖିଣ
କ୍ଷୀଣ-ଉଦରୀ କରି ନାହିଁ ମୁଁ ତୋରେ ଜାଣିବାରେ ଦୋଷଗଣ
ଗଣନା କଲେ ଅକାରଣେ ମୋ ଦୋଷ ନିଶ୍ଚୟେ ମୁଁ ଭକ୍ଷି ଗର
ଗରବ ମୋର ଏତକ ସରିଲାନି ବନ୍ଧୁ ତୋ କୋପ ସଂଘର ।
**ହରିଶଙ୍କର ଭଞ୍ଜ : ଶୃଙ୍ଖଳାବଦ୍ଧ ଚଉତିଶା**

**୨୧. ଶୃଙ୍ଖଳା - ଯମକ - ଚଉତିଶା** :- ପ୍ରତ୍ୟେକ ପଦରେ ଶୃଙ୍ଖଳା ଓ ଯମକ (ଯମକାଭାସ) ଅଳଙ୍କାର ଏକତ୍ର ଭାବେ ବ୍ୟବହୃତ ।

କରମେ ଥିଲା କଷ୍ଟ ନିକର
କରତେ ତନୁ ରତି ସୁଖକର
କରଇ ବିଧାତା ଏଡ଼େ ଦୁଷ୍କର
କରିଭୋଗୁକୁ କଲା ଦୁଃଖାକର
କରଜ ନିକର
କରକ ଦଶନାକୁ ରକ୍ଷା କର । **ଶୃଙ୍ଖଳାବଦ୍ଧ ଚଉତିଶା : ବାଣପୁର ନୃପ**

**୨୨. ଦ୍ୱିତୀୟବର୍ଣ୍ଣାନୁତର ପ୍ରାସାଦ୍ୟା ଚଉତିଶା** :- ଏହି ଚଉତିଶାରେ ପ୍ରତ୍ୟେକ ପଦର ପ୍ରତି ପାଦର ଆଦ୍ୟରେ କ, ଖ, ପ୍ରଭୃତି ୩୪ଟି ବର୍ଣ୍ଣ କ୍ରମାନୁଯାୟୀ ବିନ୍ୟସ୍ତ ହୋଇଥାଏ ଅଥଚ ଦ୍ୱିତୀୟ ବର୍ଣ୍ଣ ସ୍ଥାନରେ ବ୍ୟଞ୍ଜନ ବର୍ଣ୍ଣମାଳାର କୌଣସି ଏକ ବର୍ଣ୍ଣକୁ ଅନୁପ୍ରାସ ରୂପେ ପ୍ରୟୋଗ କରାଯାଏ ।

କୋଳ ପ୍ରତିମା ବିଳାସ । ସତେ କି ତୁ ନାହିଁ
କଳକଣ୍ଠ ! ଗଣିଧନ ! ହଜିଗଲୁ କାହିଁ
କେଳିକୁଶଳାରେ !
ଖଳ ବିହି ଏହା କି ମୋ ଭାଗ୍ୟେ ଲିହିଥିଲା
ଖୋଲି ନେଲା ନେତ୍ରତାରା ଭାଙ୍ଗି ସୁଖଲୀଳା
ଖେଳ ପ୍ରବୀଣାରେ ! **ବିଳାସବତୀର ବିୟୋଗେ**

**୨୩. ଅବନା ଚଉତିଶା** :- ଏ ପ୍ରକାର ଚଉତିଶାର ଆମୂଳଚୂଳ ସମସ୍ତ ବର୍ଣ୍ଣ ଅବନା ଅର୍ଥାତ୍ କୌଣସି ଗୋଟିଏ ବି ବନା କୌଣସି ବର୍ଣ୍ଣରେ ପ୍ରଯୁକ୍ତ ହୁଏ ନାହିଁ ।

କର୍ମଦକ୍ଷ ଭକ୍ତ ବତ୍ସଳ ବନ୍ଦ୍ୟପାଦ ଶଙ୍କର
କର୍ତ୍ତବ୍ୟ ପଥର କଷ୍ଟକମୟ ସଂକଟ ହର ।
ଖର୍ବଟକ ଚନ୍ଦ୍ର ସ୍ମରଣ ବଡ଼ ତବ ଚରଣ
ଖର୍ବ ଖର୍ବ ସନ୍ଥ କରକବହଙ୍କର ଶରଣ ।
ଗରବ ଗହନ ଦହନ କଲ ମନମଥର
ଗହନ ଜଡ଼ତ୍ୱ ମନର ମମ କଣ ପଥର ?

**୨୪. ବନା ଚଉତିଶା** :- ଏହି ଚଉତିଶାର ପ୍ରତ୍ୟେକ ପଦର ସମସ୍ତ ପାଦର ଆରମ୍ଭରେ କ, ଖ, ପ୍ରଭୃତି ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକ ଯଥାକ୍ରମେ ବିନ୍ୟସ୍ତ ହେବା ସହିତ ମୂଳରୁ ଚୂଳ ଯାଏ ସମସ୍ତ ଅକ୍ଷର ବନାଯୁକ୍ତ ହୋଇଥାଏ ।

କୃପାଧାରା ଠାକୁରାଣି !
କାହିଁକି ମା ମୋ ଭାଗ୍ୟେ ତୁ ନିଷ୍ଠୁରା ପାଷାଣୀ ।। (ଘୋଷା)
କୋଟି ନୃମୌଳିମାଳିନି କାମାକ୍ଷି କାଳିକେ
କିଶୋରୀବେଶା ମୁକୁଳାକେଶା କାପାଳିକେ ।
ଖ୍ୟାତି ବ୍ୟାପିଛି ତ୍ରିପୁରେ ଦୁର୍ଗେ ତୋ ସୁନାମେ
ଖୋଜିଲେ ମୋ ତୁଲେ ଦୁଃଖୀ ମୁ ହିଁ କ୍ଷିତିଧାମେ ।। **ଦୁର୍ଗାସ୍ତୁତି**

**୨୫. ବନାବନା ଚଉତିଶା** :- ଏହାର ପ୍ରତ୍ୟେକ ପଦର ଗୋଟିଏ ପାଦ ବନାଯୁକ୍ତ ଓ ଅନ୍ୟପାଦ ଅବନାନ୍ତ ଭାବରେ ବିନ୍ୟସ୍ତ ହୁଏ ଅଥଚ ପ୍ରତ୍ୟେକ ପଦର ସମସ୍ତ ପାଦର ଆଦ୍ୟରେ କ, ଖ, ପ୍ରଭୃତି ସେହି ବନା-ଅବନା ରୀତିରେ ଯଥାକ୍ରମେ ଏକାନ୍ତର ଭାବରେ ପ୍ରଯୁକ୍ତ ହୁଏ, ଦ୍ୱିରୂପା ଚଉତିଶା ଏହାର ଅନ୍ୟନାମ ।

କୃପାଳୁ ହେ ସୃଷ୍ଟିପାତା ମୋ ମୁକ୍ତ ବିଧାତା
କର ସତ୍ୟପଥ ପ୍ରଦର୍ଶନ,
ଖ୍ୟାତି ଲିପ୍‌ସା ପାପେ ବୁଡ଼ି ଜାତି ନୀତିହୁଡ଼ି
ଖଳତ୍ୱ ସଦନ ଜନମନ ! **ଦାରୁବ୍ରହ୍ମ ଜଣାଣ**

**୨୬. ସାନ୍ତର୍ଲପି - ବହିର୍ଲପିକା ଏକପାଦାଦ୍ୟା ଚଉତିଶା** :- ଶବ୍ଦ ମଧରେ ଉଦ୍ଦିଷ୍ଟ ବର୍ଣ୍ଣ ଗର୍ଭସ୍ଥ/ ଲୁକ୍କାୟିତ ଭାବରେ ପ୍ରଯୁକ୍ତ ହେଲେ ଅନ୍ତର୍ଲପି ହୁଏ । ଅପିଚ ଉଦ୍ଦିଷ୍ଟ ବର୍ଣ୍ଣ ଶବ୍ଦର ବହିର୍ଭାଗରେ ପ୍ରକାଶ୍ୟ ଭାବରେ ପ୍ରଯୁକ୍ତ ହେଲେ ବହିର୍ଲପି ହୁଏ । ଉଭୟ ରୀତିର ସମନ୍ୱୟରେ ରଚିତ କବିତା ସାନ୍ତର୍ଲପି - ବହିର୍ଲପିକା ଚଉତିଶା । ଏବଂବିଧ ନିୟମାବଦ୍ଧ କବିତାର କୌଣସି ଏକ ପାଦର ଆଦ୍ୟରେ ଯଦି କ, ଖ, ପ୍ରଭୃତି ୩୪ଟି ବ୍ୟଞ୍ଜନବର୍ଣ୍ଣ କ୍ରମାନୁସାରେ ପ୍ରତ୍ୟେକ ପଦରେ ବ୍ୟବହୃତ ହୁଏ, ତେବେ ତାହାକୁ "ସାନ୍ତର୍ଲପି ବହିର୍ଲପିକା ଏକପାଦାଦ୍ୟା ଚଉତିଶା" ବୋଲାଯାଏ ।

କାବ୍ୟ କଳାବତି, ଦିଅ ବାଞ୍ଛିତ ଉତ୍ତର,
ପଙ୍କଜ-ମଧେ ଆସନ, ନୁହନ୍ତି କଞ୍ଜର
ପ୍ରାଣଧନ ହେ
ଏକାକ୍ଷର କୋଷେ ତା ତପନ ହେ ।
ଖରରଶ୍ମି-ଆଶ୍ଳେଷିତ, ନୁହେଁ ରବିକର,
ଅଧୋନ୍ମୁଖୀ ରବିକରେ ଦିଶେ ମନୋହର
ତା ଆଭାସ ହେ
ଘେନ ପ୍ରିୟେ ପ୍ରତୀଚୀ ଆକାଶ ହେ । **ଲୀଳାଙ୍କେ ବାଣୀ ବିଳାସ**

୨୭. ମଧ୍ୟା ଚଉତିଶା :- ପଦର ପ୍ରତ୍ୟେକ ପାଦର ମଧ ଭାଗରେ, ବିଶେଷତଃ, ଦ୍ୱିତୀୟବର୍ଣ୍ଣ ସ୍ଥାନରେ ବ୍ୟଞ୍ଜନ ବର୍ଣ୍ଣମାଳାର କ୍ରମବିନ୍ୟାସ ଦ୍ୱାରା '**ମଧ୍ୟା ଚଉତିଶା**' ରଚିତ ହୁଏ ।

ଟୋକା ବୟସରୁ ତୋ କାନ୍ତ ହେବାରୁ ଅଭିନବ ଅଭିଳାଷେ
ସଖୀମାନେ ତୋର ରଖିଥିବେ ଯୋର କହିଥିଲୁ ଯା ବିଶ୍ୱାସେ
ରେ କାନ୍ତ, ଆଗ କଥା କି ପାଶୋର ଯାନ୍ତା
ଲଂଘିବାକୁ ହେଲା ସବୁ ଚିନ୍ତା
ଆଉ କି ଘେନି ଏତେ ଦୁଃଖିତା, ରେ କାନ୍ତା । **ଗୁପ୍ତ ନିବେଦନ**

୨୮. ଆଦ୍ୟାନୁପ୍ରାସ ମଧ୍ୟା ଚଉତିଶା :- କ, ଖ, ଆଦି ଚଉତିରିଶିଟି ବର୍ଣ୍ଣକୁ ପ୍ରତ୍ୟେକ ପଦର ମଧ ଭାଗରେ ଅର୍ଥାତ୍ ଦ୍ୱିତୀୟ ବର୍ଣ୍ଣ ରୂପେ ବିନ୍ୟସ୍ତ କରି ଏବଂ ପ୍ରଥମ ବର୍ଣ୍ଣ ସ୍ଥାନରେ କୌଣସି ଏକ ବର୍ଣ୍ଣକୁ ଆଦ୍ୟାନୁପ୍ରାସ ଅଳଂକାର ରୂପେ ସଂଯୁକ୍ତ କରି ଯେଉଁ ଚଉତିଶା ରଚନା କରାଯାଇଥାଏ ତାହା **"ଆଦ୍ୟାନୁପ୍ରାସ ମଧ୍ୟା ଚଉତିଶା"** ।

ପ୍ରକୃଷ୍ଟ ଧର୍ମ ପଥ ପ୍ରଭୁ ଭକତି
ପ୍ରକୋପା ମନ, ତହିଁ କର ତୁ ଗତି,
ପ୍ରକୃତି ଜ୍ଞାନ-ପଦେ ମାୟା-ଶାଙ୍କୋଳି
ପକାଇଛି, ତୋ ପ୍ରଭୁ ଦେବେ ତା ଖୋଲିରେ !
ପାଖେ ଅଛନ୍ତି ବିଶ୍ୱପରାଣ ପତି
ପଖନ ହୃଦୟ ସେ ନ ଦେଖି ଭକ୍ତି,
ପଖାଳ ତାଙ୍କ ପଦ ପ୍ରେମ-ଜୀବନେ
ପ୍ରଖ୍ୟାତ ହେବୁ ଯଦି ମର-ଜୀବନେ ରେ ! **ପ୍ରଭୁଭକ୍ତି**

୨୯. ଆଦ୍ୟପ୍ରାନ୍ତାନୁପ୍ରାସ ମଧ୍ୟା ଚଉତିଶା :- ପଦ୍ୟ ରଚନା ବେଳେ ପ୍ରତ୍ୟେକ ପାଦ ବା ପାଦାଂଶର ଆଦ୍ୟ ପ୍ରାନ୍ତ ଅକ୍ଷର ରୂପେ କୌଣସି ବର୍ଣ୍ଣର ଅନୁପ୍ରାସିକ ପ୍ରୟୋଗପୂର୍ବକ ସେହି ପାଦ ବା ପାଦାଂଶ ମଧ୍ୟସ୍ଥିତ କୌଣସି ବର୍ଣ୍ଣ ରୂପେ ଯଦି କ, ଖ, ପ୍ରଭୃତି ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକ ଯଥାକ୍ରମେ ପ୍ରଯୁକ୍ତ ହେଲେ **"ଆଦ୍ୟପ୍ରାନ୍ତାନୁପ୍ରାସ ମଧ୍ୟା ଚଉତିଶା"** ହୁଏ ।

ରଥାଙ୍ଗ କମ୍ବୁକର ରମ୍ୟ ମୁଖ ଶ୍ରୀଧର
ରଖ ଲକ୍ଷ୍ୟ ମୋ ଗୌରବର
ରସେକ ଘୋରତର ରକ୍ତାକ୍ଷ ଉରଗର
ରଚନା ହେଉ ଚିତ୍ତହର ହେ
ରହେ ମୁଁ ଚିନ୍ତା ଜର ଜର, ହେ ରସମ୍ବର !
ରବ-ଘର୍ଘର-ଛାନ୍ଦେତର
ରହେ ମୁଁ ଚିନ୍ତା ଜର ଜର
ରତ୍ନସୂ ଝଂଝଟର ରନ୍ଧ୍ରେରେ ନୀତିଧର
ରଯୋତା ଭାଙ୍ଗୁ, ଟେରକର ହେ । **ସ୍ତୁତି ପ୍ରାର୍ଥନା**

୩୦. ଆଦ୍ୟ ପ୍ରାନ୍ତାନୁପ୍ରାସ ଦ୍ୱିମଧ୍ୟା ଚଉତିଶା :- ଏହାର ପ୍ରତ୍ୟେକ ପାଦର ଆଦ୍ୟ ଓ ପ୍ରାନ୍ତରେ ଗୋଟିଏ ଲେଖାଏଁ ବ୍ୟଞ୍ଜନ ବର୍ଣ୍ଣ ଅନୁପ୍ରାସ ରୂପେ ପ୍ରଯୁକ୍ତ ହୋଇଥାଏ ଏବଂ ପାଦ ମଧରେ କ, ଖ, ପ୍ରଭୃତି ବ୍ୟଞ୍ଜନ ବର୍ଣ୍ଣ- ସମୂହ ଦୁଇ ଦୁଇ ଥର ବିନ୍ୟସ୍ତ ହୁଏ ।

କରୁଣା ଉଦକନିଧି ହେ ଆତଂକହାରୀ ଶଙ୍ଖ ଚକ୍ର କର
କେତେ ଦିନ ରଖିଥିବ ଏଇ ଦୁଃଖୀ ପାତକୀକି ଦୂର କର ।
କିବା ସୁଖ ଭୋଗ ? ଗଲାଣି ସରାଗ ଯାପି ଜଟିଳ ସଂସାର
କଳି-ପାପ-ମେଘ ତଳେ କାଳ ବାଘ ତରାଟୁଛି ବାରମ୍ବାର ।

୩୧. ତ୍ରିମଧ୍ୟା ଚଉତିଶା :- ଯେଉଁ ଚଉତିଶାରେ କ, ଖ, ଗ ପ୍ରଭୃତି ୩୪ଟି ବ୍ୟଞ୍ଜନ ବର୍ଣ୍ଣ ଯଥାକ୍ରମେ ପ୍ରତ୍ୟେକ ପାଦର ମଧ ଭାଗରେ ତିନି ତିନି ଥର ବିନ୍ୟସ୍ତ ହୁଏ, ତାହା "ତ୍ରିମଧ ଚଉତିଶା" ।

ଜନକ ସୁତା କନକଲତା ସନକମୋହୀ ମେନା,
ଶୀତ-ମୟୁଖ - ମୁଖୀ ! ମୋ ସୁଖ ଦାତ୍ରୀ ! ଏ ଦୁଃଖ ଦେ' ନା ।
ଅଂଗନାବର ! ସଂଗ- ନାବର ମଂଗ, ନାଗରୀ ହୀରା,
ଚାରୁ-ଜଘନା, ତୁହିଂ ମୋ ଘନାଗମ ଲଂଘନା ଧୀରା । **ଦୁର୍ଦ୍ଦିନେ ବ୍ୟାକୁଳ ବିରହୀ**

୩୨. ଆଦ୍ୟ ମଧ୍ୟାନ୍ତ୍ୟା ଚଉତିଶା :- ପ୍ରତ୍ୟେକ ପଦର ପ୍ରତ୍ୟେକ ପାଦର ଆଦ୍ୟ, ମଧ ଓ ପ୍ରାନ୍ତରେ ବ୍ୟଞ୍ଜନ ବର୍ଣ୍ଣମାଳାର କ୍ରମବିନ୍ୟାସ ସଂପାଦନଦ୍ୱାରା "ଆଦ୍ୟମଧ୍ୟାନ୍ତ୍ୟା ଚଉତିଶା" ରଚିତ ହୁଏ ।

କୁଞ୍ଜବନେ ବୃନ୍ଦା ବିଳପି କୃଷ୍ଣେ ଦିଅନ୍ତି ଡାକ
କେଣେ ଲୁଚିଲ ହେ କପଟି ! କାହିଁ ମୋ ସଖିଯାକ ?
ଖୁଆଇଲ ଯେଉଁ କଚଡ଼ା- ଖଣ୍ଡ କରମ ଲେଖା,
ଖସିଲାଣି ଗେଲ ଗରବ, ଖଣ୍ଟ ! ଦିଅ ହେ ଦେଖା !
ଗାଳି ଦେବି କିସ କରିଛି ଗୁପ୍ତ ପ୍ରେମ- ସରାଗ,
ଗଢ଼ିଛି ତ ନିଜ ହାତରେ ଗଳା-ହାରକୁ ନାଗ । **ବୃନ୍ଦା ବିଳାପ**

୩୩. ପୂର୍ବାନୁପାନ୍ତ୍ୟା ଚଉତିଶା :- ପ୍ରତ୍ୟେକ ଚରଣର ଶେଷବର୍ଣ୍ଣକୁ ଅନ୍ତ୍ୟବର୍ଣ୍ଣ ବୋଲାଯାଏ । ଅନ୍ତ୍ୟବର୍ଣ୍ଣର ପୂର୍ବବର୍ଣ୍ଣ ହେଉଛି ଉପାନ୍ତ୍ୟ ଓ ଉପାନ୍ତ୍ୟର ପୂର୍ବବର୍ଣ୍ଣ ଅନୁପାନ୍ତ୍ୟା ଏବଂ ଶେଷ ପଟରୁ ଚତୁର୍ଥ ବର୍ଣ୍ଣ ପୂର୍ବାନୁପାନ୍ତ୍ୟ ବର୍ଣ୍ଣ । ଏହି ବର୍ଣ୍ଣକୁ ଆଧାର କରି କ, ଖ, ଗ ପ୍ରଭୃତି ବର୍ଣ୍ଣମାଳା ଯଥାକ୍ରମେ ପ୍ରଯୁକ୍ତ ହେଲେ 'ପୂର୍ବାନୁପାନ୍ତ୍ୟା ଚଉତିଶା' ହୁଏ ।

କହିଲେଣି ତାତ ଦେଖିଯିବି ଯାତ
ମୋ ଲାଗି ଗୋ ମାତ କାନ୍ଦ ନାହିଁ
ନୁହନ୍ତି ତ ଚୋର କଂସ ମାମୁଁ ମୋର
ହୃଷ୍ଟ ହେବେ ମୋର ଖେଳ ଚାହିଁ
ସ୍ନେହ ପ୍ରତିମା ଗୋ
ମଧୁପୁରୀ ତୁଲେ ଗୋପପୁରୀ
ଶତ୍ରୁତା ନାହିଁ ତ ବୃଥା ତୁମ୍ଭ ଚିତ୍ତ
ହୁଏ ବିଚଳିତ ଘୁରି ଘୁରି । **କୃଷ୍ଣ ପ୍ରତ୍ୟକ୍ତି**

୩୪. ଉପାନ୍ତ୍ୟା ଚଉତିଶା :- ପ୍ରତ୍ୟେକ ପଦସ୍ଥିତ ପ୍ରତ୍ୟେକ ପାଦର ଶେଷବର୍ଣ୍ଣର ଠିକ୍ ପୂର୍ବବର୍ଣ୍ଣ ସ୍ଥାନରେ ବ୍ୟଞ୍ଜନ ବର୍ଣ୍ଣମାଳାର କ୍ରମବିନ୍ୟାସ ହେଉଥିଲେ 'ଉପାନ୍ତ୍ୟା ଚଉତିଶା' ହୁଏ । ଯଥା

ଲଙ୍କାଙ୍ଗୀ ଲଳି ରୂପ ଗୁଣ ଭାଳି
ଭାଳି ଦୁଃଖୀକାନ୍ତ ବିକଳେ

ବିରହ ବ୍ୟଥିତ- ପ୍ରାଣେ ବିଳପନ୍ତି
କାଳ ଦଇବଙ୍କ କି କଲେ,
ପୋଡ଼ା ଭାଗ୍ୟେ ସେ,
ଦେଇଗଲେ ଯେଉଁ ସଂକେତ
କା' ଆଗେ କହିବି ପ୍ରାଣ ସଖି ! ମୋତେ
ରଖିଗଲ ଶୂନ୍ୟ- ଅଂକେତ । ଲଳିତ କୁମାରୀ

୩୫. ଦ୍ୱିତ୍ୱ ଚଉତିଶା :- ଯେଉଁ ରଚନାର ପ୍ରତି ପାଦର ଆରମ୍ଭ, ମଧ ବା ପ୍ରାନ୍ତରେ ଯଦି କ, ଖ ଆଦି ବ୍ୟଞ୍ଜନ ବର୍ଣ୍ଣ ଏକତ୍ର ସଂଲଗ୍ନ ଭାବରେ ଦୁଇ ଦୁଇ ଥର କ୍ରମ ବିନ୍ୟସ୍ତ ହୁଅନ୍ତି, ତାହାକୁ 'ଦ୍ୱିତ୍ୱ ଚଉତିଶା' ବୋଲାଯାଏ ।

କେ କିସ କହିଛି ଦୋଷ ମୋର ବାଛି
କରିଛୁ ଯେବେ ପରତେ
ମୁଖ ଖାଲି ତମ ତମ କରି ଦମ
ହରା କରାଉ ଯା ମତେ, ରେ ରାମା
ହୃଦ ଗଗନର ମୋ ଚନ୍ଦ୍ରମା
ଦୁଃଖ ମେଘ-ଘନାନ୍ତ ସୁଷମା
କିପାଁ, ନ ଦେଉ ଉତ୍ତର- କ୍ଷମା, ରେ ରାମା ! ଗୁପ୍ତ ନିବେଦନ

୩୬. ଏକାନ୍ତରଦ୍ୱିତ୍ୱ ଚଉତିଶା :- ଯେଉଁଠାରେ କ କ, ଖ ଖ, ଗ ଗ ରୀତିରେ ପର୍ଯ୍ୟାୟ କ୍ରମେ ବ୍ୟଞ୍ଜନ ବର୍ଣ୍ଣମାଳା ଦୁଇ ଦୁଇଥର ପ୍ରଯୁକ୍ତ ହୁଏ, ତାହାକୁ ଦ୍ୱିତ୍ୱ ଚଉତିଶା, ଏବଂ ଉଭୟ ସମବର୍ଣ୍ଣ ମଧରେ ଅନ୍ୟ ଏକ ବିଷମ ବା ଭିନ୍ନ ବର୍ଣ୍ଣ ରହୁଥିଲେ ତାହାକୁ 'ଏକାନ୍ତରଦ୍ୱିତ୍ୱ ଚଉତିଶା' କୁହାଯାଏ ।

କନକାଙ୍ଗି ! ମୁଖେ ବିଷାଦ ବୋଳି
ଖୀରେ ଖାର କିପାଁ ଦେଉଛ ଗୋଳି ?
ଗେଲ ଗରବଟି ଯାଉଛି ଭାଙ୍ଗି
ଘମାଘୋଟ ସୁଖଦାତ୍ରୀ ଶୁଭାଙ୍ଗି
ଉର୍ବୀଉରେ ଶଯ୍ୟା
ଚାରୁ ଚରିତ୍ରେ ! ଏ କାହାକୁ ଲଜ୍ଜା ? କାମାସକ୍ତ ନିର୍ଜରା

୩୭. ମଧ ଦ୍ୱିତ୍ୱ ଚଉତିଶା :- କକ, ଖଖ, ଗଗ, ଘଘ, ରୀତିର ପର୍ଯ୍ୟାୟ କ୍ରମେ ବ୍ୟଞ୍ଜନ ବର୍ଣ୍ଣମାଳା ଯେଉଁ କବିତାରେ ପ୍ରତ୍ୟେକ ପଦର ଆରମ୍ଭ ଓ ଶେଷ ବ୍ୟତୀତ ଅନ୍ୟତ୍ର ପ୍ରଯୁକ୍ତ ହୁଏ, ତାହା 'ମଧ ଦ୍ୱିତ୍ୱ ଚଉତିଶା' ବୋଲାଯାଏ ।

ଶାନ୍ତ କୋକିଳ ବଚନା ସୁଖୀ ଖଞ୍ଜନ ଲୋଚନା
ଯୋଗ୍ୟ ଗୁଣେ ଏ ରଚନା ତୁମ୍ଭରି ଆଜି
ହେ ଅନଘା ଘନକେଶୀ ଯେଉଁ ଉତ୍ତରେ ସୁବେଶୀ
ଉଚ୍ଚ ଚରିତ୍ରାର ଶ୍ଳୋଘା ଲିଙ୍ଗିତ ରାଜି
ଦେଇଥାଅ ମ୍ଳେଚ୍ଛେ ଛଟାରେ
ତା ତୁଳନା ଗଙ୍ଗା ବୃଷଧ୍ୱଜ - ଜଟାରେ । ସ୍ୱଭାବ ସୁନ୍ଦରୀ ଅମ୍ବିକା

୩୮. ନିୟମାତିରିକ୍ତା ଚଉତିଶା :- ପ୍ରତ୍ୟେକ ପଦର ପ୍ରତ୍ୟେକ ପାଦର ଆରମ୍ଭ, ମଧ ବା ଶେଷରେ ଏକ ବା ଏକାଧିକବାର ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକର କ୍ରମବିନ୍ୟାସଗତ ବୈଚିତ୍ର୍ୟ ସୃଷ୍ଟିପାଇଁ କବି ଯେଉଁ ରଚନା ସୃଷ୍ଟି କରିଥାଏ, ତାହା 'ନିୟମାତିରିକ୍ତା ଚଉତିଶା' ରୂପେ ଅଭିହିତ । ଏଥିରେ କବି ଚଉତିଶା ନିୟମ ରକ୍ଷା କରିଥିଲେ ହେଁ ବର୍ଣ୍ଣସଂଖ୍ୟାର ନିୟମକୁ ଏକ ନିର୍ଦ୍ଦିଷ୍ଟ ରୀତିରେ ପାଳନ କରିନଥାନ୍ତି ।

କଳାବତି ! ଟେକ କଳାକର ମୁଖ
କହୁଛି କାମ ଆକଟେ,
ଖଞ୍ଜି ହେବା ଆଶା ଖସାଇ ନ ଦିଅ
ଖଟାଅ ମୋତେ ତୋ ଖଟରେ
ପ୍ରେମା !
ଗୁଣବତି, ତୁ ମୋ ରାଜଜେମା,
ଘନାଘନ - ଜଘନ-ସୁଷମା,
ଉମା-ଚୁମାଦାୟିନୀ- ଉତ୍ତମାରେ
ପ୍ରେମା ! ଗୁପ୍ତ ନିବେଦନ

୩୯. ଯୁକ୍ତାକ୍ଷରୀ ଚଉତିଶା :- ଏ ପ୍ରକାର ଚଉତିଶାରେ "କ" ଠାରୁ "କ୍ଷ" ପର୍ଯ୍ୟନ୍ତ ବର୍ଣ୍ଣଗୁଡ଼ିକ ଅନ୍ୟ ବର୍ଣ୍ଣସହ ଯୁକ୍ତ ହୋଇ ଅର୍ଥାତ୍ ଙ୍କ, ଙ୍ଖ, ଙ୍ଗ ରୂପେ କ୍ରମାନୁସାରେ ପ୍ରଯୁକ୍ତ ହୋଇଥାଆନ୍ତି ।

ରଙ୍କରତନ ଅଙ୍କ ଶ୍ରୀବନରେ
ସଙ୍ଖାଳି ତୁ ମୋ ଜୀବଜୀବନ
ଇଙ୍ଗିତରେ କାହାର ଲଙ୍ଘି ସେନେହ-ଗାର
ଯାଉଛୁ କିପାଁ ମଧୁଭୁବନ ରେ । କୃଷ୍ଣେ ଯଶୋବନ୍ତୀ

୪୦. ଯତ୍ୟାଶ୍ରିତା ଚଉତିଶା :- କ୍ରମିକ ବର୍ଣ୍ଣବିନ୍ୟାସ ପାଦର ଆଦ୍ୟ, ମଧ ବା ପ୍ରାନ୍ତରେ ପ୍ରଯୁକ୍ତ ହେଲେ ଆଦ୍ୟା, ମଧା ବା ଅନ୍ତ୍ୟା ଚଉତିଶା ବୋଲି ନାମିତ ହୁଏ ମାତ୍ର ପାଦର ଯତିପାତ ସ୍ଥଳରେ ଏହି ନିୟମ ରକ୍ଷିତ ହେଲେ ତାହା ହୁଏ ଯତ୍ୟାଶ୍ରିତା ଚଉତିଶା । ଏହାକୁ କେହି କେହି ମଧାରୀତି ଠାରୁ ଭିନ୍ନ ନୁହେଁ ବୋଲି କହିପାରନ୍ତି ; ମାତ୍ର ମଧା ଓ ଯତ୍ୟାଶ୍ରିତା ମଧରେ ଏତିକି ସୂକ୍ଷ୍ମ ପାର୍ଥକ୍ୟ ଯେ, ମଧାରେ ଚଉତିଶିଣିଟି ବର୍ଣ୍ଣ ଆଦ୍ୟ ଓ ପ୍ରାନ୍ତ ବ୍ୟତୀତ ଯେକୌଣସି ମଧବର୍ଣ୍ଣ ସ୍ଥାନରେ ବିନ୍ୟସ୍ତ ହୋଇପାରେ ; କିନ୍ତୁ ଯତ୍ୟାଶ୍ରିତା ପାଦାନ୍ତର୍ଗତ କୌଣସି ଏକ ଯତିପାତ ସ୍ଥାନରେ ହିଁ ବିନ୍ୟସ୍ତ ହୁଏ । ଯତିକୁ ଆଶ୍ରୟ କରି ଚଉତିଶା ରୀତି ରହିଥାଏ ବୋଲି ଏହାର ନାମ "ଯତ୍ୟାଶ୍ରିତା ଚଉତିଶା" ।

ପ୍ରାଣେଶ ! ସ୍ମିତବାକ୍ୟେ ଭାଷନ୍ତି ରାଣୀ
ଅଛ କି ମନେ ରଖି ପୂରୁବ ବାଣୀ ?
ଯାଚିଥିଲ ସରାଗେ ଦୁଇଟି ବର
ହେବ କି ତା ଅଲଂଘ୍ୟ ସ୍ମରଣ କର ହେ । **ବର ପ୍ରାର୍ଥନା**

୪୧. ବର୍ଗ ସଂଖ୍ୟାଶ୍ରିତା ଚଉତିଶା :– 'କ' ଠାରୁ 'ମ' ପର୍ଯ୍ୟନ୍ତ ୨୫ଟି ବର୍ଣ୍ଣ ବର୍ଗ୍ୟବର୍ଣ୍ଣ । ପ୍ରତ୍ୟେକ ବର୍ଗରେ ପାଞ୍ଚୋଟି ଲେଖାଏଁ ଅକ୍ଷର ରହୁଥିବାରୁ ୫କୁ ବର୍ଗ ସଂଖ୍ୟା ମନେ କରିବା ଯୁକ୍ତିଯୁକ୍ତ । ଏଣୁ କୌଣସି ଚଉତିଶାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କ୍ରମିକ ଗଣନାନୁସାରେ ଯଦି ଠିକ୍ ପଞ୍ଚମ ବର୍ଣ୍ଣ ସ୍ଥାନରେ କ, ଖ, ଗ, ପ୍ରଭୃତି ବର୍ଣ୍ଣଗୁଡ଼ିକ ବିନ୍ୟସ୍ତ ହୁଏ, ତେବେ ସେହି ବର୍ଣ୍ଣଗୁଡ଼ିକ ବର୍ଗସଂଖ୍ୟାଶ୍ରିତ ବୋଲି ବିବେଚିତ ହୁଅନ୍ତି ଏବଂ ଏହି ରୀତିରେ ବର୍ଣ୍ଣବିନ୍ୟସ୍ତ ଚଉତିଶାକୁ "ବର୍ଗ ସଂଖ୍ୟାଶ୍ରିତା ଚଉତିଶା" କୁହାଯାଏ ।

ସଖି ! ତୁମେ କିଏ ? କା ପ୍ରେମ ଖେଳେ ଗାଉଛ ଗୀତ
ସଙ୍ଗେ ଏ ଘର୍ଘରେ କେ ଆଉ ଗୀତେ କାହା ଚରିତ ?
ମଣୁଛ ପ୍ରାଣକୁ ଆଜି ଯା ନିନ୍ଦା ବୋଝ ପସରା
ନ ନିନ୍ଦ ତୁମେ ସେ ଟୋକାକୁ ହୃଦ – ଠାକୁର ପରା । **ଲତାନ୍ତରାଳେ କୌତୁକୀ କୃଷ୍ଣ**

୪୨. ସଂଶ୍ଳିଷ୍ଟ ଯୁଗ୍ମା ଚଉତିଶା :– ପ୍ରତ୍ୟେକ ବର୍ଣ୍ଣର ପରବର୍ତ୍ତୀ ବର୍ଣ୍ଣକୁ ତାହାର ସଂଶ୍ଳିଷ୍ଟ ବର୍ଣ୍ଣ କୁହାଯାଏ, ଅର୍ଥାତ୍ 'କ'ର ସଂଶ୍ଳିଷ୍ଟ ବର୍ଣ୍ଣ 'ଖ'; 'ଖ' ର ସଂଶ୍ଳିଷ୍ଟ ବର୍ଣ୍ଣ 'ଗ'; 'ଗ'ର ସଂଶ୍ଳିଷ୍ଟ ବର୍ଣ୍ଣ 'ଘ' । ଏହିପରି ସଂଶ୍ଳିଷ୍ଟ ବର୍ଣ୍ଣଗୁଡ଼ିକ ପରସ୍ପର ପ୍ରତି ଯୁଗ୍ମ ଭାବରେ ଗୃହୀତ ହେଲେ, ସେଗୁଡ଼ିକ ସଂଶ୍ଳିଷ୍ଟ ଯୁଗ୍ମ । ଅର୍ଥାତ୍ କଖ, ଖଗ, ଗଘ, ଘଙ ଇତ୍ୟାଦି ହେଉଛନ୍ତି ସଂଶ୍ଳିଷ୍ଟ ଯୁଗ୍ମବର୍ଣ୍ଣ । ଏହି ସଂଶ୍ଳିଷ୍ଟ ଯୁଗ୍ମା ଚଉତିଶା ଏହି ସଂଶ୍ଳିଷ୍ଟ ଯୁଗ୍ମ ବର୍ଣ୍ଣଗୁଡ଼ିକୁ ନେଇ ରଚିତ ।

ଆତଂକ ଖଣ୍ଡନ      କୋଟି ନିଃସ୍ୱ ଜନ
    ବାନ୍ଧିବ ବିଶ୍ୱବିହାରୀ ହେ,
ପ୍ରଭୁ ଖଗଧ୍ୱଜ ଘେନ ବାରେ ଲାଜ
    ବ୍ୟାକୁଳାର ଏହି ଗୁହାରି ହେ,
        କୃପାଳୁ !
    ଗରବ ରୋଗଘ୍ନ ହରି ହେ,
ନିଦାଘ ଉତ୍ତାପ      ଠାରୁ ତା ସନ୍ତାପ
    ବଳିଯାଉଛି ମୋହରି ହେ । (କୃଷ୍ଣା କାକୁତି)

୪୩. ଯତିପୂର୍ବା ଚଉତିଶା :– ଯତିପାତ ହେଉଥିବା ବର୍ଣ୍ଣର ଠିକ୍ ପୂର୍ବବର୍ତ୍ତୀ ବର୍ଣ୍ଣର ନାମ ଯତିପୂର୍ବ । ସେହିଭଳି ଯତିପୂର୍ବ ସ୍ଥାନରେ ଚଉତିଶା ରୀତି ପ୍ରଯୁକ୍ତ ହେଲେ ତାହାକୁ "ଯତିପୂର୍ବା ଚଉତିଶା" ବୋଲାଯାଏ ।

ଏଡ଼େ ଧୈର୍ଯ୍ୟହରା      କାହିଁ କି ଦେବ
ଦେବୀ ଜାନକୀଙ୍କି      ଖୋଜିବା ହେବ
ନଦୀ ଝରଣାଦି      ଗିରି କାନନେ
ବିଳପି କି ହେବ      ଘାବରା ମନେ,
    ବଳ ସାହସ କି ଉଣା,
ଅନୁସନ୍ଧାନେ ବି      ନ ମିଳିଲେ ଦେବୀ
    ଭାଗ୍ୟ ଦୋଷ ଏ ପାଉଣା ହେ । **(ସାନ୍ତ୍ୱେ ଅଶାନ୍ତି)**

୪୪. ବୃତ୍ତ୍ୟନୁପ୍ରାସିକା ଚଉତିଶା :– କ୍ରମିକ ସମାନ ସ୍ୱର ବିନ୍ୟସ୍ତ ଅଥଚ ପ୍ରଥମ ବର୍ଣ୍ଣ ବ୍ୟତୀତ ଅନ୍ୟ ବର୍ଣ୍ଣ ସାମ୍ୟସ୍ଥିତ ଏକାଧିକ ବ୍ୟଞ୍ଜନ-ବର୍ଣ୍ଣ-ଯୁକ୍ତ ସମୋଚ୍ଚାରିତ ବା ପ୍ରାୟ ସମୋଚ୍ଚାରିତ ଶବ୍ଦଗୁଡ଼ିକର ପର୍ଯ୍ୟାୟକ୍ରମିକ ପ୍ରୟୋଗ ଦ୍ୱାରା ବୃତ୍ତ୍ୟନୁପ୍ରାସ ଅଳଂକାର ହୁଏ । ଏହି ବୃତ୍ତ୍ୟନୁପ୍ରାସ ଅଳଂକାର ଯଦି ଯଥାକ୍ରମେ ଚତୁସ୍ତ୍ରିଂଶ ବର୍ଣ୍ଣଦ୍ୱାରା ସମଳଂକୃତ ହୁଏ, ତେବେ ତାହା "ବୃତ୍ତ୍ୟନୁପ୍ରାସିକା ଚଉତିଶା" ।

କନକ – ସୁଷମା ଜନକ –
    ଜେମା, ଗଲ କେଣିକି
ଖରଗତି ସେଇ ସ୍ୱରୂପ-
    ଦ୍ୟୁତି ହେମ ଏକାକି ;
ଗଲି ସିନା ମାରି ଅଳିଶ୍ରୀ-
    କେଶା ! ନୁହେଁ ଗୋ ତାହା,
ଘୂରାଇ ମୋତେ ସେ ନୂରାଇ
    ଦେଲା ଫେରିବା ରାହା । **କୁଟୀରାଙ୍ଗନେ ରାମ ଖେଦୋକ୍ତି**

୪୫. ଓଲଟ-ସିଧା- ଚଉତିଶା :– ଯେଉଁ ରଚନାରେ ଅକ୍ଷର କ୍ରମ 'କ୍ଷ' ଠାରୁ 'କ' ହୋଇ ପୁଣି 'କ' ଠାରୁ 'କ୍ଷ' ଏପରି ଓଲଟ ସିଧା ରୀତି ଅନୁସୃତ ହୋଇଥାଏ, ତାହାକୁ "ଓଲଟ – ସିଧା ଚଉତିଶା" ବୋଲାଯାଏ । କବି ବ୍ରଜସୁନ୍ଦରଙ୍କ 'ଚିଟାଉ ଚଉତିଶା' ଏହି ଧରଣର ଚଉତିଶା ପାଦାଦ୍ୟା ନିୟମରେ ରଚିତ ଓ ଏଥିରେ ବାରଗୋଟି ପଦ ଅଛି । ଏହା **ଆଷାଢ଼ ଶୁକ୍ଳ** ବାଣୀରେ ଗ୍ରଥିତ । ପ୍ରଥମ ୬ ଗୋଟି ପଦର ୩୬ଟି ପାଦ ମଧ୍ୟରୁ ପ୍ରଥମ ପାଦ ଠାରୁ ୩୩ଶ ପାଦ ଯାଏ କ୍ରମଶଃ 'କ୍ଷ' ଠାରୁ 'ଖ' ପର୍ଯ୍ୟନ୍ତ ଓ ଶେଷ ତିନିଗୋଟି ପାଦରେ 'କ' ପ୍ରଯୁକ୍ତ ହୋଇଛି । ସେହିପରି ଶେଷ ୬ ଗୋଟି ପଦର ୩୬ଟି ପାଦ ମଧ୍ୟରୁ ୩୨ଶ ପାଦ ଯାଏ 'କ' ଠାରୁ 'ସ' ପର୍ଯ୍ୟନ୍ତ ୩୩ଶ ଓ ୩୪ଶ ପାଦଦ୍ୱୟରେ 'ହ' ଏବଂ ୩୫ଶ ଓ ୩୬ଶ ପାଦରେ 'କ୍ଷ' କ୍ରମାନ୍ୱୟରେ ବ୍ୟବହୃତ ।

୪୬. ଯୁଗ୍ମା ଚଉତିଶା :– ପୂର୍ବରୁ କୁହାଯାଇଛି, ଚଉତିଶାର ସଫଳତାପାଇଁ ବିଷୟବସ୍ତୁ ନିର୍ବାଚନ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । ପୁରାଣର କୌଣସି ଏକ ଆଖ୍ୟାୟିକାକୁ ଚଉତିଶା ମାଧ୍ୟମରେ ରୂପାୟନ କରିବାପାଇଁ ପ୍ରୟାସ କରିବାବେଳେ ଗୋଟିଏ ଚଉତିଶାର କଳେବର ଯଥେଷ୍ଟ ନୁହେ ବୋଲି ଅନୁଭବ କଲେ, କବି ଏକାଧିକ ଚଉତିଶା ମାଧ୍ୟମରେ ନିଜ ବକ୍ତବ୍ୟକୁ ପୂର୍ଣ୍ଣରୂପ ଦେଇଥାଏ । ନନ୍ଦାବାଈଙ୍କ **ରୁକ୍ମିଣୀ ଚଉତିଶା** ଏହାର ଏକ ଉଦାହରଣ । କବୟିତ୍ରୀ ରୁକ୍ମିଣୀ ହରଣ ଉପାଖ୍ୟାନକୁ ଦୁଇଟି ଚଉତିଶା ମାଧ୍ୟମରେ ରୂପାୟନ କରିଛନ୍ତି ।

୪୭. ବିବିଧ ବୃତ୍ତାତ୍ମିକା ଚଉତିଶା :– ସାଧାରଣତଃ ଚଉତିଶାଗୁଡ଼ିକ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଗୋଟିଏ ବୃତ୍ତରେ ଲେଖାଯାଇଥାଏ । କିନ୍ତୁ ଗାୟନରେ ବୈଚିତ୍ର୍ୟ ସୃଷ୍ଟି ପାଇଁ କେତେକ କବି ଗୋଟିଏ ଗୋଟିଏ

ଚଉତିଶାକୁ ବିଭିନ୍ନ ବୃତ୍ତରେ ଛନ୍ଦିତ କରିଛନ୍ତି । କ୍ଷତ୍ରିୟବର ଭଞ୍ଜଙ୍କ **ସପ୍ତରାଗ ଚଉତିଶା**, ଶାମଘନଙ୍କ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ତ୍ରୟୋରାଗୀ ଚଉତିଶା, ଗୋକୁଳ ନରେନ୍ଦ୍ରଙ୍କ **ତ୍ରୟୋରାଗୀ ଚଉତିଶା** ଇତ୍ୟାଦି ଏହି ଶ୍ରେଣୀର ।

୪୮. ଏକାଧିକ କବିକୃତ ଚଉତିଶା :- ସାଧାରଣତଃ ଗୋଟିଏ ଚଉତିଶା ଜଣେ କବିଙ୍କଦ୍ୱାରା ରଚିତ, କିନ୍ତୁ ରଘୁ ଅରକ୍ଷିତ, ବଳରାମ ଏବଂ କାହ୍ନୁ- ତିନିଜଣ ମିଶି ରଚନା କରିଛନ୍ତି 'ଜ୍ଞାନଉଦେ ଚଉତିଶା । 'କ' ରୁ 'ଠ' ପର୍ଯ୍ୟନ୍ତ ବାରଗୋଟି ପଦ ରଘୁ ଅରକ୍ଷିତ, 'ଡ' ରୁ 'ଭ' ପର୍ଯ୍ୟନ୍ତ ପରବର୍ତ୍ତୀ ବାରଗୋଟି ପଦ ବଳରାମ ଏବଂ ଶେଷ 'ମ' ରୁ 'କ୍ଷ' ପର୍ଯ୍ୟନ୍ତ ଦଶଗୋଟି ପଦ କାହ୍ନୁଙ୍କ ଦ୍ୱାରା ରଚିତ । ଅବଶ୍ୟ ମିଳିତ ପ୍ରୟାସରେ ବିଭିନ୍ନ କାରଣରୁ ଗୋଟିଏ ଗୋଟିଏ ଗ୍ରନ୍ଥ ରଚନା କରିବା ଉଦାହରଣ ଭାରତୀୟ ସାରସ୍ୱତ ପରଂପରାରେ ନୂତନ ନୁହେଁ । କାଦମ୍ବରୀ, ଚମ୍ପୂ ରାମାୟଣ, କାବ୍ୟ ପ୍ରକାଶ ପରି ସଂସ୍କୃତ ଗ୍ରନ୍ଥ ଏହାର ନିଦର୍ଶନ। ସେହିପରି ଜଗନ୍ନାଥ ଦାସଙ୍କ **ଭାଗବତ**, ରାମଚନ୍ଦ୍ର ପଟ୍ଟନାୟକଙ୍କ **ଅନୁରାଗବତୀ** ଇତ୍ୟାଦି ଦୁଇ ଦୁଇ ଜଣ କବିଙ୍କ ଦ୍ୱାରା ପୂର୍ଣ୍ଣତା ପ୍ରାପ୍ତ ହୋଇଅଛି ।

ଆମେ ଜାଣୁ ପ୍ରତ୍ୟେକ ଚଉତିଶା ଶେଷରେ ଲେଖକଙ୍କ ନାମରେ ଭଣିତି ଥାଏ, ମାତ୍ର ତ୍ରିରାଗୀ ଓ ସପ୍ତରାଗୀ ଚଉତିଶାର ଯଥାକ୍ରମେ ୧୨,୨୪,୩୪ ଏବଂ ୫, ୧୦,୧୫, ୨୦,୨୫,୩୦ ଓ ୩୪ ପଦରେ ଭଣିତା ରହିଛି । ଉପର୍ଯ୍ୟୁକ୍ତ ଆଲୋଚନାରୁ ଆମେ ଚଉତିଶା ରଚନାର ବୈଚିତ୍ର୍ୟ ସମ୍ପର୍କରେ ଆକଳନ କରିପାରିବା ।

## ଚାରି

ଆମେ ପ୍ରଥମରୁ ସୂଚନା ଦେଇଛୁ, ସଂକଳନସ୍ଥ ଚଉତିଶାଗୁଡ଼ିକର ବୈଶିଷ୍ଟ୍ୟ, ଏଗୁଡ଼ିକ ଅକ୍ଷର-କର୍ମ (ସାହିତ୍ୟ), ସୁର-କର୍ମ (ସଂଗୀତ) ଓ ରଂଗ-ରେଖା-କର୍ମ (ଚିତ୍ର)ର କଳାତ୍ମକ ସମବାୟ । ପୂର୍ବରୁ ଚଉତିଶାଗୁଡ଼ିକର ସାହିତ୍ୟିକ ଓ ସାଙ୍ଗୀତିକ ବୈଶିଷ୍ଟ୍ୟ ସଂପର୍କରେ ଆଲୋଚନା କରିଛୁ । ଏବେ ଏହାର ଚିତ୍ରଧର୍ମ ପ୍ରସଂଗ ବିଚାର କରାଯାଉ । ଓଡ଼ିଶାରେ ଚିତ୍ରକଳାର ପରଂପରା, ପୃଥିବୀର ଅନ୍ୟ ବହୁ ଭୂମିର ଜନ ସମୁଦାୟଙ୍କ ପରି ବେଶ୍ ପ୍ରାଚୀନ ଏବଂ ଉଭୟ ଦେଶୀ ଓ ବିଦେଶୀ କଳାସମୀକ୍ଷକମାନେ ତତ୍ ସମ୍ପର୍କରେ ବସ୍ତୁନିଷ୍ଠ ଆଲୋଚନା କରିଛନ୍ତି ।[୭] ଗୁମ୍ଫା, ମନ୍ଦିର, ରାଜପ୍ରାସାଦ ଓ ମଠର କାନ୍ଥ ଏବଂ ସାଧାରଣ ଗୃହସ୍ଥମାନଙ୍କ ଘରର କାନ୍ଥ ଓ ଚଟାଣ ହୋଇଛି ଚିତ୍ରର ଭିତ୍ତିଭୂମି । ମାତ୍ର ପତରକୁ ଚିତ୍ରକରମାନେ କେବେ ପୃଷ୍ଠପଟ ଭାବେ ନିଜର କରିଛନ୍ତି, ଲେଖନୀ ମୁନରେ ରେଖା ଟାଣିଛନ୍ତି, ରଂଗ ଦେଇଛନ୍ତି, ତାହାର ଇତିହାସ ବିତର୍କିତ । ବୈଜ୍ଞାନିକମାନେ ଅନୁମାନ କରନ୍ତି, ଜସା ଓ ପ୍ରାକୃତିକ କୀଟନାଶକ ପ୍ରୟୋଗଦ୍ୱାରା ସଂରକ୍ଷିତ ତାଳପତ୍ରର ପରମାୟୁ ପ୍ରାୟ ତିନିଶହରୁ ସାଢ଼େତିନିଶହ ବର୍ଷ । ଏବେ ଓଡ଼ିଶାରେ ମିଳୁଥିବା ଚିତ୍ରପୋଥିଗୁଡ଼ିକ ମଧ୍ୟରେ ଏହି ଗ୍ରନ୍ଥ ସଂଯୋଜିତ **ରୁକ୍ମିଣୀ ଚଉତିଶା** ଯେ ସର୍ବ ପ୍ରାଚୀନ, ଏହା ସ୍ୱୀକାର କରିବାରେ ସନ୍ଦେହ ନାହିଁ । ପୋଥିର ପତ୍ରଗୁଡ଼ିକର ଧାର କୀଟ, ପାଣି ଓ ଉତ୍ତାପ ସଂକ୍ରମିତ । କେତେକ ପତ୍ର ସଂପୂର୍ଣ୍ଣ ନଷ୍ଟ ଓ କେତେକ ନଷ୍ଟ-ପ୍ରାୟ । ମାତ୍ର ରଂଗର ପ୍ରଲେପ ଥିବା ବହୁ ପତ୍ରର ରେଖା ଏବେ ମଧ୍ୟ ସ୍ପଷ୍ଟ ଓ ରଂଗ ଚିତ୍ତ-ଉଲ୍ଲାସକ । ଏହାର ଆୟୁଷ ପ୍ରାୟ ୩୦୦-୩୫୦ ବର୍ଷରୁ କମ୍ ହୋଇନପାରେ । ସେହି ନ୍ୟାୟରେ ଏହାର ଚିତ୍ରଣ କାଳ ପ୍ରାୟ ସପ୍ତଦଶ ଶତାବ୍ଦୀର ଶେଷଭାଗ ହେବା ସମ୍ଭବ । ପ୍ରଶ୍ନ ଉଠେ, ଏହି ଚିତ୍ର କବିଙ୍କ ସୃଜନ ପ୍ରତିଭାର ଅଭିବ୍ୟକ୍ତି କି ? ପୂର୍ବରୁ କହିଛୁ, ସମ୍ଭବତଃ ଚଉତିଶାର ରଚନାକାଳ ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗ । ତେଣୁ କବି-ପ୍ରସୂତ ନହେବାର ସମ୍ଭାବନା ଅଧିକ । ପୁନଶ୍ଚ ଚିତ୍ରାବଳୀର କଳାତ୍ମକତାକୁ ବିଶ୍ଳେଷଣ କଲେ, ଯେ କୌଣସି ଗ୍ରାହକ-ସମୀକ୍ଷକ ଆଦୌ ଅସ୍ୱୀକାର କରିବ ନାହିଁ, ଏହା ଏକ ଶକ୍ତିଶାଳୀ ପରଂପରାର ଉଚ୍ଚକିତ ଅଭିପ୍ରକାଶ । ଚିତ୍ରଗୁଡ଼ିକ ଆକାରରେ ଛୋଟ, ମିନିଏଚର୍ । ଗଣେଶ, ବଳରାମ ଓ ଜଗନ୍ନାଥଙ୍କ ବ୍ୟତୀତ ଅନ୍ୟଗୁଡ଼ିକ ପାର୍ଶ୍ୱିକ, ପ୍ରୋଫାଇଲ୍ । ଦୁଇତିନୋଟି ବ୍ୟତୀତ ଅନ୍ୟଗୁଡ଼ିକ ପତ୍ରର ବାମ ଅଥବା ଦକ୍ଷିଣ ପାଖରେ ସ୍ଥାନିତ । ଅନ୍ୟପାଖରେ ଗୀତର ପଂକ୍ତି, ଯୁଦ୍ଧଦୃଶ୍ୟର କେତୋଟି ପୃଷ୍ଠା ସଂପୂର୍ଣ୍ଣ ଚିତ୍ରିତ । ବୀରମାନେ ଆୟୁଧଯୁକ୍ତ; କେହି ପଦାତିକ, କେହି ଗଜାରୋହୀ, କେହି ରଥାରୂଢ଼ । କାହା ମୁହଁରେ ଗାଲମୁଛା ଓ ଆଉ କାହାର ଦାଢ଼ୀ । ସବୁ ନାରୀ ବସ୍ତ୍ରାବୃତା, ସଂଯତ ଓ ସାଳଂକୃତ । ସେମାନଙ୍କ ଶାଢ଼ୀରେ ଭଳି ଭଳି ଚିତ୍ର, ମୋଟିଫ୍ । ଟଭାଫଳ ପରି ଗଭା । ନାରୀ ଓ ପୁରୁଷ, ଉଭୟଙ୍କ କ୍ଷୀଣ କଟି, ପ୍ରଶସ୍ତ ଛାତି । କାବ୍ୟର ଭାଷା ଓ ଶରୀରର ଭାଷା ମଧ୍ୟରେ ରହିଛି ଅପୂର୍ବ ସାଙ୍ଗୋପାଙ୍ଗତା । ଏଥି ସହିତ ରହିଛି ଜଗତି, ଅଟ୍ଟାଳିକା, ପଲଙ୍କ ଓ ଅନ୍ୟ ଆସବାବପତ୍ର । ଯେଉଁ କେତୋଟି ଚିତ୍ର ମନକୁ କିଣିନିଏ, ସେଗୁଡ଼ିକ- ପଲଙ୍କ ଉପରେ ଶାୟିତା ଓ ହାନ୍ଦୋଳାରେ ଉପବିଷ୍ଟା ରୁକ୍ମିଣୀ, ଶଙ୍ଖଚକ୍ର ଗଦାପଦ୍ମଧାରୀ ଶ୍ରୀକୃଷ୍ଣ ଏବଂ ଶିଶୁପାଳ ଓ ଜଗନ୍ନାଥ ସେନାଙ୍କ ମଧ୍ୟରେ ସମର । ରେଖାଗୁଡ଼ିକ ସ୍ପଷ୍ଟ ଓ ରଂଗର ପ୍ରଲେପ କୌଣସି ସ୍ଥାନରେ ସୀମା ଆରପଟକୁ ଯାଇନାହିଁ। ସବୁ ସୁସଂହତ ଓ ସୁବିନ୍ୟସ୍ତ ।

ତେଣୁ, ରୁକ୍ମିଣୀ ଚଉତିଶାକୁ ପ୍ରଥମରେ ରଖି, ଚିତ୍ରପୋଥିଗୁଡ଼ିକର ଏହିପରି କ୍ରମ- ଯଥା, ଗୀତଗୋବିନ୍ଦ (ଚିତ୍ରକର ଧନଞ୍ଜୟ; ୧୬୮୫), ଉଷାଅଭିଳାଷ, କୁମୁଦକାନ୍ତ ଚଉତିଶା, ଅମରୁଶତକ, ରାଧାକୃଷ୍ଣକେଳି, ଲାବଣ୍ୟବତୀ, ଆର୍ତ୍ତତ୍ରାଣ ଚଉତିଶା ଓ ଜଣାଣ ଚଉତିଶା ତିଆରି କରାଯାଇପାରିବ ।[୮] ଉପର୍ଯ୍ୟୁକ୍ତ ତାଳପତ୍ର ପୃଷ୍ଠରେ ଅଙ୍କିତ ରେଖା ଓ ରଂଗ ବିନ୍ୟାସରେ ସୂକ୍ଷ୍ମ ପାର୍ଥକ୍ୟ ଅବଶ୍ୟ ରହିଛି, ମାତ୍ର **ଆର୍ତ୍ତତ୍ରାଣ ଚଉତିଶା** ଓ **ଜଣାଣ ଚଉତିଶା** ବ୍ୟତୀତ ଅନ୍ୟଗୁଡ଼ିକ ପ୍ରାୟ ସମଗୋତ୍ରୀୟ । ମନେହୁଏ, କୁମୁଦକାନ୍ତ ଚଉତିଶାର କବି ନାରାୟଣ ଦାସ ଆପଣା ଅକ୍ଷର-କର୍ମକୁ ରେଖା ଓ ରଙ୍ଗ- କର୍ମରେ ରୂପାନ୍ତର କରିଛନ୍ତି । ଏହା ଅଷ୍ଟାଦଶ ଶତାବ୍ଦୀର ଅଙ୍କନ । ମାତ୍ର ଫିସର୍ ଓ ଦିନନାଥ ପାଠୀ, ଦୁଇ ବିଖ୍ୟାତ ଚିତ୍ର ସମୀକ୍ଷକ, ଅମରୁଶତକ, ଉଷାଅଭିଳାଷ ଓ ରାଧାକୃଷ୍ଣକେଳି ପୋଥିର ଚିତ୍ରକରଙ୍କୁ ଶରଣକୁଳ, ନୟାଗଡ଼ର ଜନୈକ ଧନେଶ୍ୱର ବୋଲି ପ୍ରତିଷ୍ଠା କରିଛନ୍ତି ।[୯] ଏବଂ, ପ୍ରମାଣ କରିବାକୁ ଚାହିଁଛନ୍ତି, ପୋଥିଚିତ୍ର ପରଂପରା ସମକାଳରେ ଓଡ଼ିଶାର ଦକ୍ଷିଣାଞ୍ଚଳ, ବିଶେଷତଃ ଚିକିଟି, ବୁଗୁଡ଼ା ଆଦି ଅଞ୍ଚଳରେ ସମୃଦ୍ଧ ଥିଲା । ମାତ୍ର ଆମେ ଦକ୍ଷିଣ ଓଡ଼ିଶା ସହିତ ପୁରୀକୁ ମଧ୍ୟ ଏହି ପରଂପରାର ଅନ୍ୟତମ ପାଳନକ୍ଷେତ୍ର କହିପାରିବା । କାରଣ ଏହି ପରଂପରା ବହୁଭାବରେ ମନ୍ଦିର ଓ ମଠ ସମ୍ପର୍କିତ ଏବଂ ପୁରୀ ହେଉଛି ମନ୍ଦିର ଓ ମଠର ଏକ ଭବ୍ୟଭୂମି । ଆଜି ମଧ୍ୟ ପୁରୀର ବହୁ ମଠରେ ଭିତ୍ତିଚିତ୍ର ରହିଛି । ଏବଂ, ପଟଚିତ୍ର-ଯାହାର ପାଳନ ଭୂମି ପୁରୀ ଏବଂ ଯାହା ଉତ୍କଳୀୟ ଚିତ୍ର ପରଂପରାର ପ୍ରତୀକ, ତାହା ସହିତ ପତରଚିତ୍ରର ସଂପର୍କ ମଧ୍ୟ ନିବିଡ଼ । ପୁନଶ୍ଚ ଆର୍ତ୍ତତ୍ରାଣ ଚଉତିଶାର ଦୁଇଗୋଟି ପୋଥି ପୁରୀରୁ ସଂଗୃହୀତ । ଅବଶ୍ୟ ଦିନନାଥ ସମଶୈଳୀର ଏକ ପୋଥି ଶରଣକୁଳରୁ ପାଇଛନ୍ତି । ଏହାର ଆନୁମାନିକ ଅଙ୍କନ କାଳ ୧୮୯୮ ଓ ରଘୁନାଥ ପୃଷ୍ଟି ଚିତ୍ରକର ବୋଲି ଉଲ୍ଲେଖ କରିଛନ୍ତି । ଏହି ସିଦ୍ଧାନ୍ତ ଅସତ୍ୟ ନ ହୋଇପାରେ । ମାତ୍ର ଏହି ସଂକଳନରେ ସ୍ଥାନିତ ଚିତ୍ରପୋଥି ପୁରୀର କୌଣସି କଳାକାରଙ୍କ ପ୍ରତିଭା-ପ୍ରସୂତ ବୋଲି ଗ୍ରହଣକଲେ ଅମୂଳକ ହେବନାହିଁ । ପୁନଶ୍ଚ, ଜଣାଣ ଚଉତିଶାର ରେଖା-ବିନ୍ୟାସ ସମ୍ଭବତଃ କବି-ଲେଖନୀ ସଂଜାତ । ଚିତ୍ରଗୁଡ଼ିକୁ ଦେଖିଲେ ମନେହୁଏ, ସେ ଅଙ୍କନ-କୁଶଳୀ ନୁହନ୍ତି । ସମ୍ଭବତଃ, ମୁଦ୍ରଣଶିଳ୍ପ ଉତ୍ପାଦିତ କାଗଜଚିତ୍ର, ପତରଚିତ୍ର ଅଙ୍କନ ପରଂପରାର ଅସ୍ତିତ୍ୱ ପ୍ରତି ଆହ୍ୱାନ ହୋଇଛି, ଚିତ୍ରକରମାନେ ଆତ୍ମଗୋପନକୁ ସ୍ୱୀକାର କରିଛନ୍ତି । ପରଂପରାର କ୍ରମ ଅବକ୍ଷୟ ପର୍ବ ଆରମ୍ଭ ହୋଇଛି ।

ଅବକ୍ଷୟର ଧାରା କେତେ ଯନ୍ତ୍ରଣାଦାୟକ, ସମୃଦ୍ଧ ଅତୀତର ପୁଲକ ଅନୁଭବ କରିଥିବା ମଣିଷ ଜଣେ ଏହି ପୋଥିର ଚିତ୍ର ଦେଖିଲେ ବୁଝିପାରିବେ ।

ସୂଚନା ଦେଇଛୁ, **ଉଷାଅଭିଳାଷ, ଅମରୁଶତକ, କମଳାକାନ୍ତ ଚଉତିଶା** ଓ **ଲାବଣ୍ୟବତୀ** କାବ୍ୟର ଚିତ୍ରାବଳୀ ମଧ୍ୟରେ କେତେକ କ୍ଷେତ୍ରରେ ସୂକ୍ଷ୍ମ ପାର୍ଥକ୍ୟ ସୁସ୍ପଷ୍ଟ । ମାତ୍ର ପୋଥି-ପତ୍ରସ୍ଥ ସୃଜନ-କର୍ମକୁ ଏହି ପରମ୍ପରା ପ୍ରବାହର ଶିଖର ଅଭିବ୍ୟକ୍ତି କୁହାଯାଇପାରେ । ସ୍ଥାପତ୍ୟରେ କୋଣାର୍କ, ଅକ୍ଷର-କ୍ରମରେ ମଧ୍ୟଯୁଗୀୟ କାବ୍ୟାବଳୀର ଏଗୁଡ଼ିକ ସମପର୍ଯ୍ୟାୟୀ । ଅର୍ଥାତ୍, ଅଭିବ୍ୟକ୍ତିର ଯେ କୌଣସି ପ୍ରରୂପକୁ ଦେଖିଲେ, ପଢ଼ିହୁଏ, ଗାଇହୁଏ ; ପଢ଼ିଲେ ଦେଖିହୁଏ, ଗାଇହୁଏ ଏବଂ ଗାଇଲେ, ପଢ଼ିହୁଏ ଓ ଦେଖିହୁଏ । କାବ୍ୟର କାହାଣୀ, ତାହା ମହାକାବ୍ୟିକ, ପୌରାଣିକ ଅଥବା ଆଖ୍ୟାୟିକାମୂଳକ ହେଉ, ପ୍ରାୟ ସମସ୍ତ ଗୋଟିଏ ପ୍ରକାରର । ପରିବେଶ, ଚରିତ୍ରମାନଙ୍କ ଅନୁଭବ ଓ ବିଚାର ବର୍ଣ୍ଣନାର ଶବ୍ଦବସାଣ ଓ ସ୍ୱରସଂଯୋଜନାରେ ଯାହା ପାର୍ଥକ୍ୟ ରହିଛି । ଚିତ୍ରଗୁଡ଼ିକ ଉପରେ ଆଖି ପଡ଼ିଗଲେ ଦୁଶେ, ରୁକ୍ମିଣୀ ସମୟକ୍ରମେ ରାଧା, ଉଷା ଓ ଲାବଣ୍ୟବତୀରେ ରୂପାନ୍ତରିତ ହୋଇଯାଇଛନ୍ତି । ଏବଂ, ଦ୍ୱାରକାର କୃଷ୍ଣ ଚାଲିଯାଇଛନ୍ତି ଗୋପ ; ଅନିରୁଦ୍ଧ, ଚନ୍ଦ୍ରଭାନୁ ସେହି ଚିରନ୍ତନ ପ୍ରେମିକ-ସତ୍ତାର ନାମାନ୍ତର । ନାୟିକାମାନେ ନବ-ସପତବର୍ଷା, ଅନୁଭବରେ କେତେବେଳେ ଅଭିସାରିକା, ଖଣ୍ଡିତା, କୋପିତା, ଲଜ୍ୟାଶୀଳା, ଅଶ୍ରୁମୁଖୀ ତ, ଆଉ କେତେବେଳେ ରତିମଗ୍ନା । ସେମାନେ ଚନ୍ଦ୍ରବଦନୀ, ହରିଣନୟନୀ, ଜବାଧରୀ, କମ୍ବୁକଣ୍ଠୀ, ଘନ-ପୀନ ପୟୋଧରୀ (କରୀ-କୁମ୍ଭ-ସ୍ତନା), ଡମରୁ-ମଧମା ଓ ଗୁରୁ-ନିତମ୍ବିନୀ । ନାୟକମାନଙ୍କର ପ୍ରଶସ୍ତ ଛାତି, ଉନ୍ନତ ନାସା, ଆଜାନୁଲମ୍ବିତ ବାହୁ, ସରୁ ନିଶ, ପ୍ରସାରିତ ଆଖି, ଶିରରେ ବେଷ୍ଟି, ଅଣ୍ଟାରେ କମରପଟି ଏବଂ ଆଣ୍ଠୁତଳକୁ ଧୋତି । ସେମାନଙ୍କ ଗତିରେ ଉଦାମତ୍ତା, ଆଚରଣରେ ପ୍ରଚଣ୍ଡ ପୌରୁଷ । ପୁରୁଷ ଓ ନାରୀ, ପ୍ରତ୍ୟେକ ବସ୍ତ୍ରାବୃତା ଓ ସାଳଂକୃତା (ନଖଠାରୁ ଶିଖପର୍ଯ୍ୟନ୍ତ), ପୁଣି ସ୍ଥଳ ବିଶେଷରେ ଉଲ୍ଲଗ୍ନା । ଲତା, ଫୁଲ, ପତ୍ରାବଳୀରେ ବସ୍ତ୍ରଗୁଡ଼ିକ ଚିତ୍ରିତ । ସେଗୁଡ଼ିକ ପୁଣି ବିଭିନ୍ନ ଆକାର ଓ ରଙ୍ଗର । କାନି, ଫେର ଓ ପଣତ ଉଡ୍ଡୀୟମାନ । ନାରୀମାନଙ୍କର ବେଣୀ ଲମ୍ବ ତ କେଉଁଠି, ଟଭାଫଳିଆ ଓ ବେଣ୍ଟିଆ ଖୋସା । ପୁରୁଷମାନଙ୍କର କେଶସଜ୍ଜା ମଧ ତଦନୁରୂପ । ବସିବା, ଶୋଇବା, ଠିଆହେବା, ଚାଲିବା, କଥାକହିବା, ଯୁଦ୍ଧକରିବା, ବାଜା ବଜାଇବା, ନାଚିବାବେଳେ ସେମାନଙ୍କ ଦେହର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗରେ ସମଧର୍ମୀ ଅଭିବ୍ୟକ୍ତି । ସେମାନଙ୍କ ହାତ, ପାଦ, ଅଣ୍ଟା, ଛାତି, ଆଖି ଓ ଓଠରେ ଭାବଧର୍ମୀ ମୁଦ୍ରା । ବେଳେବେଳେ ବସ୍ତ୍ରଭିତରୁ ଦେହର ଗୋପନୀୟ ଓ ଆକର୍ଷଣୀୟ ବିଭବମାନ ସ୍ପଷ୍ଟ ଦୃଶିଯାଏ । ଦେହକୁ ଦେଖି ସେମାନଙ୍କ ମନ ଗହନର ଗୋପନ କଥାଗୁଡ଼ିକ ପଢ଼ିହୁଏ, ବୁଝିହୁଏ । ସତେଯେପରି ସେମାନେ ଉଡ଼ିଯିବାକୁ ଉଚ୍ଛାଟିତ । ବେଳେବେଳେ ପ୍ରଶ୍ନଉଠେ- ଚତୁର୍ଦ୍ଦଶ, ପଞ୍ଚଦଶ ଶତାବ୍ଦୀରେ ୟୁରୋପର ନାନା ଭୂଖଣ୍ଡରେ ଅଙ୍କିତ ଚିତ୍ରାବଳୀର ଏଗୁଡ଼ିକ ପ୍ରତିଛାୟା ନୁହନ୍ତି ତ ? ମଣିଷ ପରି ସ୍ଥଳଚର ଓ ଜଳଚର ଜୀବ (ସିଂହ, ବାଘ, ଘୋଡ଼ା, ଓଟ, ହାତୀ, ବରାହ, ହରିଣ, ସାପ, କଙ୍କଡ଼ା, ବେଙ୍ଗ ଇତ୍ୟାଦି), ପକ୍ଷୀ (ମୟୂର, କୁକୁଡ଼ା, ହଂସ ଇତ୍ୟାଦି), ଗଛ, ଲତା, ଫଳ, ଉପବନ ; ବିଭିନ୍ନ ଆସବାବପତ୍ର (ଜଗତି, ପଲଙ୍କ, ପାଲିଙ୍କି, ରଥ, ପ୍ରାସାଦ, ଚାମର, ତକିଆ, ବିଞ୍ଚଣା, ଛତ୍ର ଇତ୍ୟାଦି), ଅସ୍ତ୍ରଶସ୍ତ୍ର (କୁନ୍ତ, ଧନୁଶର, ଗଦା, ତ୍ରିଶୂଳ ଇତ୍ୟାଦି), ବାଦ୍ୟଯନ୍ତ୍ର (ମର୍ଦ୍ଦଳ, ଶଙ୍ଖ, ତୁରୀ, ବଂଶୀ, ବୀଣା ଓ ଡମରୁ ଇତ୍ୟାଦି)- ସବୁକିଛି ଲାଗନ୍ତି ଜୀବନ୍ତ । ରଥାରୋହୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକମାନଙ୍କୁ ଦେଖିଲେ, ସେକାଳର ଯୁଦ୍ଧଦୃଶ୍ୟ, ଅସ୍ତ୍ରଶସ୍ତ୍ର ଓ ଆହାର୍ଯ୍ୟ ଆଖିଆଗରେ ନାଚିଯାଏ । ରେଖା ଅତ୍ୟନ୍ତ ସୂକ୍ଷ୍ମ, ରଂଗ କହିଲେ ପ୍ରାକୃତିକ ଉପାଦାନ (ଗଛର ପତ୍ର, ଫୁଲ ଓ ଛେଲି, ଶଙ୍ଖ, ହଳଦୀ ଓ ଅଙ୍ଗାର ଇତ୍ୟାଦି) ରେ ପ୍ରସ୍ତୁତ, ମୁଖ୍ୟତଃ ଲାଲ୍, କଳା, ନୀଳ ଓ ସିନ୍ଦୂରାର ସଚେତନ ଓ ଭାବଧର୍ମୀ ପ୍ରଲେପ[୧୦] ଏବଂ ଏହାହିଁ ଜଣେ ଚିତ୍ରକରର ନନ୍ଦନ ଦୃଷ୍ଟି ଓ କଳାନୈପୁଣ୍ୟର ଯଥାର୍ଥ ପରିଚୟ ।

ଉପର୍ଯ୍ୟୁକ୍ତ ଚାରିଗୋଟି ପୋଥିରେ ଯେଉଁ ଦୃଶ୍ୟ ଜଣେ ଅରସିକକୁ ମଧ ମୋହଗ୍ରସ୍ତ କରିଦିଏ, ତାହା **କୁମୁଦକାନ୍ତ**ରେ ଚିତ୍ରିତ ନାୟକ-ନାୟିକାଙ୍କ ଯୁଗନଦ୍ଧ ରୂପ । ଦେହ-ସୁଖ-ବିଭୋର ବିଭିନ୍ନ ବନ୍ଧଚିତ୍ରର ସଂଖ୍ୟା **ଗୀତଗୋବିନ୍ଦ, ଉଷାଅଭିଳାଷ, କୁମୁଦକାନ୍ତ ଚଉତିଶା** ଓ **ଅମରୁଶତକ**ରେ ଯଥାକ୍ରମେ ୧୦,୮,୨୪ ଓ ୪୮ । ମନେହୁଏ, ସେମାନେ ବାତ୍ସାୟନଙ୍କ କାମସୂତ୍ର ବର୍ଣ୍ଣିତ ଚଉଷଠି ବନ୍ଧକୁ ଯେପରି ଦେଖିପାରିନାହାନ୍ତି । ୪୮ରେ ଅଟକି ଯାଇଛନ୍ତି । କୁମୁଦକାନ୍ତ ଚଉତିଶାର ଚିତ୍ରଗୁଡ଼ିକ ସମ୍ଭବତଃ କବିଙ୍କଦ୍ୱାରା ଅଙ୍କିତ । ଏଥିରେ ୨୪ ଗୋଟି ବନ୍ଧଚିତ୍ର ରହିଥିଲେ ସୁଦ୍ଧା, ମାତ୍ର ଗୋଟିଏ ପଦ (୩୧ ଶ)ରେ ସମ୍ଭୋଗ ବର୍ଣ୍ଣନାର ସୂଚନା ରହିଛି । ମୟୂର ମୟୂରୀ, ମଲ୍ଲଯୁଦ୍ଧ, ବୃଷଭଯୁଦ୍ଧ, ହସ୍ତୀ ଯୁଥ ପ୍ରଭୃତି ଚିତ୍ର ମଧ କବିଙ୍କ କାମ-ଭାବନା ଏବଂ ପ୍ରତୀକାତ୍ମକ ଚିତ୍ରାଙ୍କନ କୌଶଳର ସୂଚକ । ଚିତ୍ରଗୁଡ଼ିକରୁ ଶ୍ରୀକୃଷ୍ଣଙ୍କ ମୟୂର ଚୂଳଟିକୁ ଲିଭେଇଦେଲେ, ସେହି ପୁରୁଷ ଯେ କୌଣସି ଦକ୍ଷିଣ ନାୟକରେ ରୂପାନ୍ତରିତ ହୋଇଯାଇପାରିବେ । ଚଉତିଶାର ପ୍ରଥମ ଦୁଇଟି ପଦ ଲୌକିକ ଶୃଙ୍ଗାର ରସର ହିଁ ଭ୍ରମ ସୃଷ୍ଟି କରିଥାଏ । ରଚନାରେ ଜଣେ ରସିକ କବିର ଅନୁଭୂତି ଓ ଉଦ୍‌ଗତ ଭାବନା ସ୍ୱତଃସ୍ଫୂର୍ତ୍ତ ଭାବରେ ପ୍ରକାଶିତ ହୋଇଥିବାଯୋଗୁଁ ଏହା ପାଠକୀୟ ଆଦୃତି ଲାଭ କରିପାରିଛି । ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ କୁମୁଦକାନ୍ତ ଚଉତିଶା "ଅନୁଭୂତିରୁ ପ୍ରଖ୍ୟାତ ମାନସ ରଚନା" ।

ପ୍ରଶ୍ନଉଠେ, କିଏ ତା' ହେଲେ ଏହି ଚିତ୍ରକରମାନେ ? ବାରଣାସୀଠାରୁ ଅଳ୍ପଦୂରରେ ସପ୍ତପର୍ଣ୍ଣୀ ଆଶ୍ରମର ତପସ୍ୱୀ ବାତ୍ସାୟନଙ୍କ ଉତ୍ତରାଧିକାରୀ, ନା କାମାସକ୍ତ ଓ ବହୁନାରୀ ସମ୍ଭୋଗ-ବିଳାସୀ ଭ୍ରଷ୍ଟ-ନାୟକ । ସେମାନଙ୍କୁ ଶୁଦ୍ଧବାଦୀମାନେ ଅବଶ୍ୟ ଦୁଶ୍ଚରିତ୍ର ଓ ସେମାନଙ୍କ ସୃଜନକର୍ମକୁ ଅଶ୍ଳୀଳ କହିପାରନ୍ତି । ମାତ୍ର ବ୍ୟକ୍ତି-ଜୀବନକୁ ଗତିଶୀଳ କରୁଥିବା ନିଦାନର ଅନ୍ୟନାମ ଯେ କାମ, ସୃଜନକର୍ମ ସବୁକାଳରେ ମହାସୁଖଦାୟକ ଓ ପବିତ୍ର, ଏହି ବାସ୍ତବତାକୁ କେହି ଏଯାବତ୍ ଅସ୍ୱୀକାର କରିନାହାନ୍ତି । ସେହି ନ୍ୟାୟରେ, ତାଳପତ୍ରରେ ଜୀବନ୍ୟାସ ପାଇଥିବା ଅନଙ୍ଗର ରଙ୍ଗ ଓ ରୂପକୁ ଅଶ୍ଳୀଳ ; ତେଣୁ ଅବଶ୍ୟ ପରିତ୍ୟଜ୍ୟ, ଏକଥା କହିବା କେତେମାତ୍ରାରେ ଯୁକ୍ତିସଙ୍ଗତ, ତାହା ଅବଶ୍ୟ ବିଚାର୍ଯ୍ୟ । ମାତ୍ର ଜୀବନକୁ ବୁଝିଥିବା ଯେ କୌଣସି ମଣିଷ, ପତ୍ରରେ ସ୍ଥାନିତ କେଳି-ପ୍ରମତ୍ତ, ଉଲ୍ଲଙ୍ଗ ପୁରୁଷ ଓ ନାରୀ (ଯେଉଁମାନଙ୍କୁ ରାଧା-କୃଷ୍ଣ, ଶିବ-ପାର୍ବତୀ, ଅନିରୁଦ୍ଧ-ଉଷା, କାମଦେବ-ରତିଙ୍କ ଯୁଗ୍ମ ସତ୍ତାରେ ଅନୁଭବ କରାଯାଇପାରେ)ଙ୍କ ସ୍ୱାଭାବିକ ଚର୍ଯ୍ୟାରେ ଚରମ ତୃପ୍ତିର ଆନନ୍ଦ ଅନୁଭବ କରେ, ସେମାନଙ୍କ ଭିତରେ ନିଜକୁ ଆବିଷ୍କାର କରେ । ଏହି ଆନନ୍ଦର ଅନ୍ୟନାମ ଦିବ୍ୟାନନ୍ଦ, ବ୍ରହ୍ମ-ସ୍ୱାଦ-ସହୋଦର ଓ ଜୀବନ-ମୁକ୍ତି । ପଞ୍ଚେନ୍ଦ୍ରିୟଙ୍କୁ ଆଧାରକରି ଯେଉଁ କଳା ମଣିଷକୁ ଇନ୍ଦ୍ରିୟୋତ୍ତର ଅନୁଭବରେ ସମାହିତ କରିନପାରେ, ନିମ୍ନ ଚେତନାକୁ ଚିର ଅତୃପ୍ତ ଓ ଆହତ କରୁଥାଏ ; ତାହାହିଁ ଅଶ୍ଳୀଳ, ତେଣୁ ପରିତ୍ୟଜ୍ୟ । କୁମୁଦକାନ୍ତ ଚଉତିଶାର ଯୁଗନଦ୍ଧ ଚିତ୍ରଗୁଡ଼ିକ, ସେହି ନ୍ୟାୟରେ, ଉଲ୍ଲଙ୍ଗ ନୁହେଁ, ଜୀବ-ପରମ-ସମ୍ମିଳନର କଳାରୂପ । ଏବଂ, ଅନ୍ୟପକ୍ଷରେ ରୁକ୍ମିଣୀ ଚଉତିଶା, ଆର୍ତ୍ତତ୍ରାଣ ଚଉତିଶା ଓ ଜଣାଣ ଚଉତିଶାର ଚିତ୍ରାବଳୀକୁ ମଧ ଭାବାନୁସାରି ପଦଯୋଜନା ବା ଅକ୍ଷରବ୍ରହ୍ମର ଚିତ୍ରରୂପ ବୋଲି ଅବଶ୍ୟ କହିପାରିବା । ବିଶ୍ୱାସ, ଚାରିଗୋଟି ଚିତ୍ର-ଚଉତିଶାର ଏହି ସଂକଳନ ଓଡ଼ିଆମାନଙ୍କୁ ଆପଣା ଅସ୍ମିତା ଅନୁଭବର ସୁଯୋଗ ଦେବ ।

## ନୋଟ୍ ଓ ଆକର ସୂଚୀ


୧. ଚଉତିଶା ମୁଦ୍ରଣରେ ଗୌରୀଶଙ୍କର ରାୟ ଓ ଗୋବିନ୍ଦ ରଥଙ୍କ ନାମ ସ୍ମରଣୀୟ । ନିମ୍ନ ପ୍ରଦତ୍ତ ବହିଗୁଡ଼ିକରେ ଶତାଧିକ ଚଉତିଶା ମୁଦ୍ରିତ । କୁଞ୍ଜବିହାରୀ ଦାଶ ଓ ନୀଳମଣି ମିଶ୍ରଙ୍କ ସମ୍ପାଦନାରେ ପ୍ରକାଶିତ ଚଉତିଶାଗୁଡ଼ିକ ରାଜ୍ୟସଂଗ୍ରହାଳୟର ପୋଥିଭଣ୍ଡାରରେ ସୁରକ୍ଷିତ । ଚଉତିଶା ମଧୁଚକ୍ର, ଭୀମଭୋଇଙ୍କ ଚଉତିଶାଗୁଡ଼ିକର ସଂଗ୍ରହ । ଏବଂ, ସଚ୍ଚିଦାନନ୍ଦ ମିଶ୍ରଙ୍କ ଚଉତିଶାଗୁଡ଼ିକ ସୁସମ୍ପାଦିତ, ଏହାର ଦୀର୍ଘ ମୁଖବନ୍ଧ ଅବଶ୍ୟ ପାଠ୍ୟ । ଏତଦ୍‌ବ୍ୟତୀତ, ଏହି ବହିର ପରିଶିଷ୍ଟରେ ଚଉତିଶାଗୁଡ଼ିକର ଏକ ତାଲିକା ରହିଛି । ଏହା ସୁଦର୍ଶନ ଆଚାର୍ଯ୍ୟଙ୍କଦ୍ୱାରା ପ୍ରସ୍ତୁତ ।

କ. ଦାଶ, କୁଞ୍ଜବିହାରୀ, (ସଂ) ୧୯୭୭, ଚଉତିଶା ସଞ୍ଚୟନ, ଭୁବନେଶ୍ୱର, ରାଜ୍ୟ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ ।

ଖ. ମହାନ୍ତି, ଆର୍ତ୍ତବଲ୍ଲଭ, (ସଂ) ୧୯୭୨ : ଦ୍ୱି.ସଂ., ଚଉତିଶା ମଧୁଚକ୍ର, ଭୁବନେଶ୍ୱର, ଉତ୍କଳ ବିଶ୍ୱବିଦ୍ୟାଳୟ ।

ଗ. ମିଶ୍ର, ସଚ୍ଚିଦାନନ୍ଦ, (ସଂ) ୧୯୭୧, ଚଉତିଶା ବିଚିତ୍ରା, ବ୍ରହ୍ମପୁର, ପୁସ୍ତକଭଣ୍ଡାର ।

୨. ଓଡ଼ିଶା ରାଜ୍ୟସଂଗ୍ରହାଳୟରେ ଉପଲବ୍ଧ ଚାରିଗୋଟି ପୋଥିର ବିବରଣୀ

କ. କୁମୁଦକାନ୍ତ ଚଉତିଶା, କ୍ର.ନଂ. Ext. 139, ଜଣାଣ ଚଉତିଶା

ଖ. ଜଣାଣ ଚଉତିଶା, କ୍ର.ନଂ. Ext. 100,

ଗ. କ୍ର. ନଂ. Ex. 324,

ଘ. ଆର୍ତ୍ତତ୍ରାଣ ଚଉତିଶା କ୍ର.ନଂ. Ext. 316, 317 ଏବଂ OL. 350 D, OL. 892 G, OL. 897 B, OL. 1390 C.

୩. ସାହୁ, କୃଷ୍ଣଚରଣ, ୧୯୮୬, ଓଡ଼ିଆ ଲେଖକ ପରିଚୟ (୧୪୫୦-୧୮୫୦), ଭୁବନେଶ୍ୱର, ଓଡ଼ିଶା ସାହିତ୍ୟଏକାଡ଼େମୀ, ପୃଷ୍ଠା- ୭୧ ।

୪. ରୁକ୍ମିଣୀଙ୍କ ବିବାହ ପ୍ରସଙ୍ଗକୁ ଆଧାରକରି ରଚିତ ଅନ୍ୟ କେତୋଟି ବିଶେଷ କୃତି-

କ. ରୁକ୍ମିଣୀ ବିଳାସ (ଲକ୍ଷ୍ମୀନାରାୟଣ ନୃପ), ରୁକ୍ମିଣୀ ମାଳଶ୍ରୀ (କ୍ଷତ୍ରିୟବର ଭଞ୍ଜ), ରୁକ୍ମିଣୀ କଳସା (ବିରୁଳି ନୃପ) ଏବଂ ରୁକ୍ମିଣୀ ମାଳଶ୍ରୀ (କଣ୍ଠଦାସ) ।

୫. ମହାପାତ୍ର, କେଦାରନାଥ, ୧୯୮୪; ଦ୍ୱି.ସଂ., ଖୁରୁଧା ଇତିହାସ, କଟକ, ଗ୍ରନ୍ଥମନ୍ଦିର, ପୃଷ୍ଠା ୧୪୬ ।

୬. ଦାଶ, ସୂର୍ଯ୍ୟନାରାୟଣ, (୧୯୬୪), ଓଡ଼ିଆ ସାହିତ୍ୟର ଇତିହାସ (ପ୍ରଥମ ଭାଗ), କଟକ, ଗ୍ରନ୍ଥ ମନ୍ଦିରର ବୌଦ୍ଧଗାନ ଦୋହା ସମ୍ପର୍କିତ ଆଲୋଚନା ଦ୍ରଷ୍ଟବ୍ୟ ।

୭. ଓଡ଼ିଶାର ଚିତ୍ରପରମ୍ପରା, ବିଶେଷତଃ ଭିତ୍ତିଚିତ୍ର ଓ ପୋଥିଚିତ୍ର ଅଧ୍ୟୟନ କ୍ଷେତ୍ରରେ ନିମ୍ନୋକ୍ତ ଗବେଷକମାନଙ୍କ ନାମ ସ୍ମରଣୀୟ ।

କ. Das, Harischandra, 1984, Glimpses of Orissan Art and Culture, in, Golden Jubli Vol. of Orissa Historical Research Journal, Vol. 30, Bhubaneswar, State Museum.

ଖ. Das, J.P. (ed) 1985, Illustrated Palm leaf Manuscript from Orissa, New Delhi.

ଗ. Donaldson, Thomas E, 1985, Hindu Temple Art of Orissa, Vol.1-13, Leiden.

ଘ. Eberhard, Ficher and Pathy, Dinanath (ed) 1987, Die Per Lenkette

<u>Dem Geliebten, Zuric Museum, Rietberg.</u>

(ed), 2006, Amorous Delight, The Amarusatak Palm Leaf, Zuric, Artbus Asiae Publication.

ଙ. Ganguli, O.C., 1955, summary Survey of Orissan Paintings, in, Marg- Vol. 8.4. Bombay

ଚ. Pani, Subas (ed) 1984, Illustrated Palm Leaf Manuscript Of Orissa, Selection from the State Museum, Bhubaneswar.

ଛ. Pathy, Dinanath, 1981, Mural Paintings in Orissa, Bhubaneswar, Lalitkala Academy.

ଜ. Mahapatra, Sitakanta (ed), 1996, Ushabhilash, New Delhi, Lalitkala Academy.

୮. ଓଡ଼ିଶା ରାଜ୍ୟସଂଗ୍ରହାଳୟ ଦ୍ୱାରା ପ୍ରକାଶିତ ଏହି ଦୁଇଟି ଗ୍ରନ୍ଥ ବିଶେଷ ଦ୍ରଷ୍ଟବ୍ୟ ।

କ. Malla, Bhagyalipi (ed), 2008, Shree Jayadevas Gitagovinda.

ଖ. Malla, Bhagyalipi (ed), 2010, Usha Abhilasha, Sishu Sankar Das.

୯. ପାଠୀ, ଦିନନାଥ, ୨୦୧୦, ରୂପ ରସ ଅନଙ୍ଗ, ଭୁବନେଶ୍ୱର, ଏଥେନା ବୁକ୍ସ, ପୃଷ୍ଠା, ୯୫-୧୦୦ ।

୧୦. ଦ୍ରଷ୍ଟବ୍ୟ, ପୁସ୍ତକ ଟିପ୍ପଣୀ-୭ଘ (୨୦୦୬), ପୃଷ୍ଠା-୬୯ ।



ସୁଦର୍ଶନ ଆଚାର୍ଯ୍ୟ, ଭାଗ୍ୟଲିପି ମଲ୍ଲ, ଗୌରାଙ୍ଗ ଚରଣ ଦାଶ



ପ୍ରଥମ ଭାଗ

ଶ୍ରୀ ପରମମଙ୍ଗଳ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚରଣେ ଶରଣ

ଶ୍ରୀ ବିଘ୍ନରାଜ ନମ

ରକ୍ମଣୀ ଚଉତିଶା ଲେଖନ

କରପତ୍ର ଯୋଡ଼ିଣ     ପରୀକ୍ଷ ରାୟେ କହେ     ଶୁଣିମା ମୁନି ବ୍ରହ୍ମଋଷି
କେମନ୍ତ ରକ୍ମଣୀର     ବିଭା ଉଛେବ[୧] କଥା     ମୋହରେ କହିବା ବିଶେଷି
ଆହେ ମୁନି,     କୃଷ୍ଣର ଚରିତ୍ର ଶୁଣିମି
କେଉଂଣ[୨] ମତେ, ରକ୍ମଣୀ ନେଲେ     ଅନ୍ତଂଯାମି[୩]
କହିବା ମାହାମୁନି     ଅମୃତ ରସ କଥା     ଶୁଣି ମୁ ମୁକତ ହୋଇବି ।୦।

କହନ୍ତି ମାହାମୁନି     ପରୀକ୍ଷ ରାଜ ଆଗେ     ରକ୍ମଣୀ ସଂଏମ୍ବର[୪] ଜାଣ
କର୍ମେଣ ପଞ୍ଚୁପୁତ୍ର     ଭୀସ୍ମେକ[୫] ନୃପତିର     ସବୁହୁ ଜ୍ୟେଷ୍ଠ ତା ରକ୍ମଣ[୬]
ଆହେ ରାଏ, କନେଷ୍ଟ[୭] ଦୋହିତା ରକ୍ମଣୀ
କମଳିଣୀ, ସଂଏଁ[୮] ସମ୍ଭୁତ ହୋଏ ପୁଣି
କୃଷ୍ଣ ଘରଣୀ ବୋଲି     ରକ୍ମଣ ନ ଜାଣଇ     ଶିଶୁପାଳ ବରଇ ଆଣି ।୧।

୧. ଉଛବ, ୨. କିପରି, ୩. ଅନ୍ତର୍ଯ୍ୟାମୀ. ୪. ସ୍ୱୟଂବର, ୫. ଭୀଷ୍ମକ ୬. ରୁକ୍ମଣ, ୭. କନିଷ୍ଠ, ୮. ସ୍ୱୟଂ



ଖରେଣ[୧] ଉଠି ତହିଂ     ପରୀକ୍ଷ ରାଣ[୨] ଯାଇଂ     ଖଟି ପ୍ରଳମ୍ବ[୩] ମୁନି ପାଏ[୪]
ଖୁଦ୍ର[୫] ପାତେକ ମୋର     ଯେତେକ ଅଙ୍ଗେ ଥିଲା     ସକଳ ଗଲା ଏବେ କ୍ଷୟେ
ଆହେ ମୁନି,     ଖେଳର୍ତା[୬] ସିଙ୍ଘ ଜଗନାଥ[୬]
ଖୁଦ୍ର ସିନା,     ନ ଜାଣଇ ଭୀସ୍ମେକର ପୁତ୍ର
ଖରା ବରଷା ଶୀତ     ବାରହ ମାସ ତାର     ଛଡ[୭] ଋତୁରେ ଆତଜାତ ।୦।

ଖଟତିଂ[୮] ଯେତେ ଦାସୀ     ରକ୍ମଣୀ ସନିଧରେ     ସମସ୍ତେ ପରମ ବିଶ୍ୱାସ
ଖଡି ଚାମର ଛତ୍ର     ହଡ଼ପ[୯] ପରିଖ[୧୦] ଯେ     ଖଟିଣ ଥାନ୍ତି ତାର ପାଶ
ଆହେ ରାଏ, ଖେଡ଼[୧୧] ସକଟା ପଶା ନୃତ[୧୨]
ଖଟିଥାନ୍ତି, ସକଳ ଦାସୀ ଅନବ୍ରତ
ଖୋପା[୧୩] ଖୋପିଣ[୧୪] ନାନା     ବସ୍ତ୍ର ପରିହରଣ[୧୫] ଦ୍ରିବ୍ୟ[୧୬] ଅଳଂକାର ମାନନ୍ତ ।୨।

୧ ଶୀଘ୍ର, ୨. ରାଜା, ୩. ସାଷ୍ଟାଙ୍ଗ ପ୍ରଣିପାତ, ତଳକୁ ମୁହଁ କରି ଲମ୍ବ ହୋଇ ଶୋଇପଡ଼ିବା, ୪. ପାଦରେ ୫. କ୍ଷୁଦ୍ର, ଛୋଟ, ୬. ଖେଳନ୍ତା ସିଂହ ଜଗନ୍ନାଥ, ୭. ଛଅ, ୮. ଖଟନ୍ତି, ସେବାକରନ୍ତି ୯. ପାନ/ ତାମ୍ବୁଳ, ୧୦. ପାନପିକ, ୧୧. ଖେଳ ୧୨. ନୃତ୍ୟ, ନାଚ, ୧୩. ଖୋସା, ଗଭା, ୧୪. ବାନ୍ଧିଣ ୧୫. ପିନ୍ଧିବା, ୧୬. ଦିବ୍ୟ, ଦେବଭୋଗ୍ୟ



ଗୁପତ କରିଂ - ରକ୍ମଣୀ କହୁଛନ୍ତି ସକଳ ମୁଦୁସୁଲି ରାଇଂ[୧]
ଗବନ[୨] କରି ତୁମ୍ଭେ ମାତା କ୍ଷାମୁକୁ[୩] ଯିବ ବହନ[୪] କହିବ ମଣାଇଂ
ଆଗୋ ସଖି, ଗୁପତେ ସକଳ କହିବ
ଗଲା ଦେହ, ପଛେ କି ଲୋଡ଼ିଲେ ପାଇବ
- ମୋର ଅବିଭାଇତ[୫] ପଣେ କ୍ଷାମୁରେ ଜଣାଇ ଆସିବ ।୦।

ଗୁପତ କରି ଏକ ଦାସୀଏ କହୁଅଛି ଶୁଣିମା ଠାକୁରାଣୀ ମାଏ[୬]
ଗାଳି ନ ଦେବ ମୋତେ ବରେକ ଖୋଜିଆଣ ଦ୍ୱାରେକା ପତି ଦେବରାଏ[୭]
ଆଗୋ ମାଏ, ଗୋପପୁରରେ ତାଙ୍କ ଜନ୍ମ
ଗଉଡ଼ଙ୍କ, ସାଙ୍ଗେ ବଢ଼ିଲେ କିଛୁଦିନ
ଗୋବର୍ଦ୍ଧନ ଧରିଣ ଇନ୍ଦ୍ରକୁ ଜିଣିଲା ଗୋ ------------------
---------------------------------------- ।୩।

୧. ରାଇ, ଡାକିକରି, ୨. ଗମନ, ୩. ପାଖକୁ, ୪. ଶୀଘ୍ର ୫. ଅବିବାହିତ, ୬. ମାତ, ମାଆ, ୭. ରାଜା



ଘୋର ଯମୁନା ଜଳେ କାଳିକି ମୃଦିଲା[୧] ଗୋ ଅର୍ଘା[୨] ପାଟିରୁ ଉବୁରିଲା[୩]
ଘୋର ବିପୁନେ[୪] ବ୍ରହ୍ମା ବକ୍ଷା[୫] ଯେ ହରିନେଲା ପ୍ରଭୁ ସେ ବକ୍ଷା ଜାତ କଲା
ଆଗୋ ମାଏ,
ଘୋର ନାଦେ କୃଷ୍ଣ ତା ପାଦେ କଲେ ଚୂର
ଘରୁ ବାହାର ହୋଇ ମାଏ ପୁତ୍ରକୁ ନେଇଂ ଖଟାଇଲେ[୬] ଯାମଳା ବୃକ୍ଷର ।୦।

XX XX XX
ବେନି ଭାଗ ହୋଇଛି ଏଣୁ ତେଣିକି କୃଷ୍ଣ ଗଲେ
ଆଗୋ ମାଏ, ଘୋଟିଲା ଯାମ ବାଆ[୭] X X XX
ଘୋର ନାଦ କରିଣ ଶ୍ରୀକୃଷ୍ଣ ପ୍ରହାରିଲେ ପାଦେ କେ କଲା ଶତେ ଚୂର ।୪।

୧. ମର୍ଦ୍ଦନ କରିବା, ପାଦରେ ଦଳିବା, ୨. ଅଘାସୁର ୩. ମୁକ୍ତ ହେବା ୪. ବିପିନ, ବଣ, ୫. ବତ୍ସା, ବାଛୁରୀ, ୬. ବାନ୍ଧିଲେ, ୭. ଖଣ୍ଡିଆଭୂତ, ଘୂର୍ଣ୍ଣିବାୟୁ



ନାରାୟଣ ମହିମା    କେତେ କହିବା ମାଏ    କଥାକୁ କଥା ଅଗୋଚର
ନିଶ୍ଚୟେ ସାଗରେ ଯେ    ଝାସ ଦେଇଣ ଥିବ    ସେହୁ ପାଇବ ତାଙ୍କୁ ବର[୧]
ଆଗୋ ମାଏ,   ନାରାଏଣ[୨]କୁଁ ବର ତୁହି
ନ ପୁଣ ତୁ, କୋପ[୩] ଗୋ କର ପ୍ରାଣ ସହିଁ
ନିର୍ବାଣି[୪] ଅଛି ଧାତା[୫]    ଲକ୍ଷ୍ମୀକିଂ ନାରାଏଣ    ତୁମ୍ଭକୁଂ ବର ଅଟେ ସେହି ।୦।

ନେଲା ଅକ୍ରୁଂର[୬] ଗୋପୁ    କଂସ ଅଗ୍ୟାଁ ପ୍ରମାଣେ    ଧନୁ ଉଛବ[୭] ଦେଖିବାକୁ
ନନ୍ଦ ସହିତେ ଯେତେ    ଗୋପେ ଗୋପାଳ ଥିଲେ  ସମସ୍ତେ ଗଲେ ଆଣିମା[୮]କୁ
ଆଗୋ ମାଏ, ନଇଲେ ସେହିଦିନୁ ହରିଁ
ନଗ୍ର ଯାକ, ଆନନ୍ଦ ମଥୁରା ନଗରୀଁ
ନଦେଲା ବସ୍ତ୍ର ବୋଲିଂ    ରଜକ ମୁଣ୍ଡକାଟି    କୁବୁଜୀ କଲେ ଅପକ୍ଷରାଁ[୯] ।୫।

୧. ଯିଏ ସମୁଦ୍ରରେ ଝାସ ଦେଇଥିବ, ସେ ହିଁ ତାଙ୍କୁ ବର ରୂପେ ପାଇବ, ୨. ନାରାୟଣ,୩. ଦୁଃଖ, ୪. ନିର୍ମାଣ ଅଛି, ତିଆରି କରିଛି, ୫. ବ୍ରହ୍ମା, ସୃଷ୍ଟିକର୍ତ୍ତା
୬. ଅକ୍ରୁର, ୭. ଉତ୍ସବ, ୮. ଆଣିବାକୁ, ୯. ଅପ୍ସରା, ସ୍ୱର୍ଗବେଶ୍ୟା



ଚାର[୧] ଜଣାଇ ଯାଇଂ    ନୃପତି କଂସ ଆଗେ    କୃଷ୍ଣ ଯେ ମଥୁରା ଅଇଲେ
ଚାପୋଡେ ମାରି ତୋର   ରଜେକ[୨] ମୁଣ୍ଡ କାଟି    କୁବୁଜୀ ନିସ୍ତାରିଣ[୩] ଦେଲେ
ଆଗୋ ମାଏ,    ଚାର ମୁଖରୁ ରାଏ ଶୁଣି
ଚାଣୁର ଯେ,    ମୁଷ୍ଟିକ କୁବଳୟ ଆଣି
ଚଉକତିରେ ରାଜା    ଉଗରା[୪] ବୁଲାଇଲା    ବାରତା କହୁଥିବ ଆଣି ।୦।

ଚାଣୁର ମୁଷ୍ଟିକକୁ    ହେଳେଣ[୫] ନାଶ କଲେ    କୁବଳୟା ଷାମୁରେଣ[୬] ଭେଟ
ଚାପିଣ ଲାଞ୍ଜ ଧରି    ଦୁଇଭାଇଂ ବୁଲାଇ    ----------------ରଟ ମଟ
ଆଗୋ ମାଏ, ଚାପୋଡେ ମାହୁନ୍ତ ପଡ଼ିଲା
ଚଉକତି[୭],  ଶ୍ରୀକୃଷ୍ଣ   ମହିମା ଶୁଭିଲା
ଚାଣୁର ମୁଷ୍ଟିକ    କୁବଳୟା ମଲା ବୋଲିଂ   କଂସକୁ ଉଗରା କହିଲା ।୬।

୧. ଦୂତ, ୨. ରଜକ, ବସ୍ତ୍ର ସଫା କରୁଥିବା ବ୍ୟକ୍ତି, ୩. ମୁକ୍ତ କରିବା, ଉଦ୍ଧାର କରିବା ୪. ଉଗର, ବାର୍ତ୍ତାବହ, ୫. ସହଜରେ, ଅନାୟାସରେ
୬. ଆଗରେ, ସମ୍ମୁଖରେ, ୭. ଚାରିପାଖରେ, ସବୁଆଡ଼େ



ଛଳ କରିଣ ରାଜା    ଅକ୍ରୁର[୧] ପେଶିଦେଇଁ    କୃଷ୍ଣଙ୍କୁ ଘେନାଇ ଅଇଲା[୨]
ଛନ[୩] ହୋଇଲା ପୁଣି    ଶ୍ରୀକୃଷ୍ଣ କଥା ଶୁଣି    ଲେଉଟି ଡଗରା ପେଶିଲା
ଆହେ ଚାର, ଛଳେଣ[୪] ଯାଉ ସେ ଗୋପକୁ
ଛେମା[୫] କଲୁ, ସକଳ ଦୋଷ ଶ୍ରୀକୃଷ୍ଣକୁ
ଛିତିପତି[୬] ବଚନେ    ଡଗର ଶୁଣି ଯାଇଁ    ବାରତା କହିଲା କୃଷ୍ଣକୁଁ ।୦।

ଛେମେ[୭] ଯାଇ ଡଗରା    କହି ରାଣ ଛାମୁରେ[୮]    ଶ୍ରୀକୃଷ୍ଣ ଭେଟିବେ ତୁମ୍ଭଙ୍କୁ
ଛାଡ଼ିଦିଅ ଦୁଆର    ଛାମୁରେ ଭେଟା ଆମ୍ଭେ    ତେବେ ସେ ଯିବୁ ହେ ଗୋପକୁ
ଆଗୋ ମାଏ, ଛାମୁରେ ଡଗରା କହିଲା
ଛନ ହୋଇ, କଂସ ଯେ ଆସ୍ତାନେ[୯] ଉଠିଲା
ଛିଡ଼ା ହୋଇଣ ରାଜା    ଶ୍ରୀକୃଷ୍ଣ ମୁଖ ଦେଖି    ଜଗତୀ[୧୦] ଉପର ପଡ଼ିଲା ।୬।

୧. ଅକ୍ରୂର ୨. ଘେନିଆଣିବା , ୩. ଭୟଭୀତ , ୪. କପଟରେ ୫. କ୍ଷମା, ୬. କ୍ଷିତିପତି, ପୃଥିବୀର ଅଧିପତି, ରାଜା, ୭. ଶୁଭରେ, ଯଥାବିଧିରେ, ୮. ଛାମୁରେ, ଆଗରେ ୯. ବସିବା ସ୍ଥାନ, ୧୦. ସିଂହାସନ



ଜାଣିଲେ ଜଗନାଥେ    କଂସ ମଲା ବୋଲିଣ    ଜଗତୀ ଉପରକୁ ଗଲେ
ଯାଇଂଣ ଅନ୍ତେପୁରେ    ମାଇଂମାନଙ୍କୁ ଧରି    ମିଛେହେ କାନ୍ଦିଣ ବସିଲେ
ଆଗୋ ମାଇଂ, ଜାଣୁ ଜାଣୁଣ ନୋହ ବଣା[୧]
ଯାବୃତ[୨] ଗୋ, କାଳକୁ କଥାଏ କହଣା[୩]
ଜନି[୪] ହୋଇଲେ ମରି    ଏଥକୁ କିଂପା କାନ୍ଦିଂ    କଟକେ ଦିଅ ବେଗେ ଠଣା[୫] ।୦।

ଜାଣିଲେ ଉଗ୍ରସେନ    କଂସ ନିଧନ ବୋଲିଂ    କୃଷ୍ଣଙ୍କୁ ଦରଶନ କଲା
ଯାବତ କାଳକୁ ରାଜା    ହୋଇଣ ଥାଅ ଏବେ    ତପ ତୋ ସୁଫଳ ହୋଇଲା
ଆଗୋ ମାଏ, ଯାଇଣ ମାଆଙ୍କୁଂ[୬] ଭେଟିଲେ
ଜନି କାଳୁ, ପିତାଙ୍କୁଂ ଦେଖି ଯେ ନ ଥିଲେ
ଜଏ[୭] ଶବଦ କରି    ମାତା ପିତାଙ୍କୁଂ ଘେନି    ଦ୍ୱାରିକା ପୁରେ ବିଜେ କଲେ ।୮।

୧. ଭୁଲିଯିବା, ଅସ୍ଥିର ମାନସିକତା, ଯାହା ସତ ତାହା ପାଶୋରି ଦେଉଛ କିପରି, ୨. ଘୋଡ଼େଇ ହୋଇ ରହିବା, ଲୁଚି ରହିବା, ୩. କୁହାଯାଏ, ଜଗତରେ ଏହା ସାର୍ବକାଳିକ ସତ୍ୟ,
୪. ଜନ୍ମ, ୫. ସ୍ଥାନ, ୬. କୃଷ୍ଣଙ୍କର ମା ଦେବକୀ, ୭. ଜୟ



ଝେଝକା[୧] ନ ପାଅନି    ଶୁଣ ଗୋ ଠାକୁରାଣୀ    ଏ ବର ଯୋଗାଇ କି ତୋତେ
ଝିଅ ବିଭା ବୋଲିଣ    ବାପେ ତ ନ ଜାଣିଲେ    ତୋତେ ମୁଁ କହିବଇଂ କେତେ
ଆଗୋ ମାଏ, ଝଂପିଲା[୨] ରାହୁଟି ମଦନ
ଝିମଟକେ[୩], ଶ୍ୱରୀର କରଇଂ ଅଗ୍ୟାନ[୪]
ଝଗଡ଼[୫] ନ ପାଇ ସର୍ବେ    ଯାଅ ବୋଲିଂ ତହିଂକି    ହୃଦରେ ନ କର ଗୋ ଆନ ।୦।

ଝୁରି[୬] ଯେ ଥିଲା ବସି    ଭାସ୍ୱେକ ନନ୍ଦନୀ ସେ    ଶୁଣିଣ ହରଷ ହୋଇଲେ
ଝିମାଇଂ[୭] ଗରଳ ଯେ    ଶ୍ୱରୀରେ ଘୋଟିଥିଲା    ଅମୃତ ସତେ କି ସିଞ୍ଚିଲେ
ଆଗୋ ସଖି, ଝଗଡ଼[୮] ମାନ ଏଥୁ ଯିବା
ଝାଡିକାରେ[୯], ମାଆଙ୍କ କ୍ଷାମୁରେ[୧୦] କହିବା
ଝମଟେ[୧୧] ନ ଜାଅଇଂ    ଶ୍ରୀକୃଷ୍ଣ ନ ପାଇଲେ    କ୍ଷାମୁରେ ଜଣାଇ ଆସିବା ।୯।

୧. ଛାନିଆ, ଉଦ୍‌ବେଗ, ୨.ବଳପ୍ରୟୋଗ କରି ନିଜ ପାଖକୁ ଟାଣି ଆଣିବା, ୩. ତତ୍‌କ୍ଷଣାତ୍, ନିମିଷକେ, ୪. ଅଚେତନ, ୫. କଷ୍ଟ, ୬. ମନଦୁଃଖରେ,
୭. ଅବଶ, ଢୋଳାଇବା, ୮. ଭ୍ରାନ୍ତି, ୯. ଶୀଘ୍ର, ୧୦. ଆଗରେ, ୧୧. କ୍ଷଣେ ମାତ୍ର



ନିରନ୍ତର[୧] ଶ୍ରୀକୃଷ୍ଣ    କଥା ହୃଦରେ ଗୁଣି[୨]    ସଖିକି ଘେନି ତତପର[୩]
ନ କର ବିଳମ୍ବ ଗୋ    ଶୀଘ୍ର ହୋଇଣ ଯିବା    କହିବା ମାତାଙ୍କ କ୍ଷାମୁର
ଆଗୋ ସଖି, ନିଅ ମୋ ମାତାଙ୍କ କ୍ଷାମୁକୁ
ନମସ୍କାର, କରିଣ କହିବା ତାହାଙ୍କୁ
ନ ଦେବେ ଯେବେ ମୋତେ    ବସୁଦେବ ସୁତଙ୍କୁ    ନାହିଂ ମୋ ଆଶା ଜୀବନକୁ ।୦।

ନଳିଣୀ ବନେ ଯେହ୍ନେ    ଶିଶିର ଧଂସିଲା[୪] ଗୋ    ପିତା ମୋ କହିଲେ ତାହା ପୁଣି
ନାରାୟଣଙ୍କୁଂ ମୁଇଂ    ବର ପାଇବି ବୋଲିଂ    ଆଗହୁଂ ହୃଦେ ଅଛି ଗୁଣି
ଆଗୋ ସଖି, ନାରାୟଣ ମହିମା ଶୁଣି
ନିରନ୍ତରେ, ତାହା ସେ ହୃଦେ ଅଛି ଗୁଣି[୫]
ନ ପୁଣ ପିତା ମୋର    ଆନ ବର ବରଇଂ    ବହନ ଯିବା ସଂଘାତୁଣୀ[୬] ॥୧୦॥

୧. ବାରମ୍ବାର, ସଦାସର୍ବଦା, ୨. ଜପିବା, ମନେପକାଇବା ୩. ତତ୍ପର, ବ୍ୟଗ୍ର ୪. ଧ୍ୱଂସକଲା, ନଷ୍ଟକଲା, ୫. ବାରଂବାର ସ୍ମରଣ କରିବା, ୬. ସଂଗାତ, ମିତ, ଅଂତରଙ୍ଗ ମଣିଷ



ତୁମ୍ଭେ ତାହା ଅନ୍ତର ନ କର ।
ତୁଳସି ବନେ – ବିଛୁଆତୀ ଉପୁଜିଲା
ସେ କନ୍ୟା ଇଛାଏ କାହିଁ ବର ॥
ତ୍ରିପୁତି ଭଜିଅଛି   କୃଷ୍ଣବର ପାଇବ
ତୁମ୍ଭେ ତା ଆନ ଯେ ନ କର ।୦।

ଆହେ ରାଏ, ତାହାକୁ ମନରେ ଯେ ବର
ତିନି ପୁରେ, ଖୋଜି ପାଇବ ଇଏ ବର
ତୁମ୍ଭେ କହ ପୁତ୍ରକୁ   ଝଗଡ଼ ନ ପାଉସେ
ବରିଣ ଆଣୁ ଚକ୍ରଧର ॥୧୬॥



ଥିର[1] କରିଣ ରାଣୀ     ରାଜାଙ୍କୁ ଜଣାଇଲେ     ଶୁଣିମା ସାବଧାନ ହୋଇଁ
ଥୋଇଛି[2] ବର କନ୍ୟା   ଧାତା ଏକ ସଁଯୋଗେ   ପୁତ୍ର ତା ଭାଙ୍ଗଇ[3] କାହିଁପାଇଁ
ଆହେ ରାଏ, ଥବିର[4] କର ତୁମ୍ଭ ହିଆ
ଥନି କରି[5], କୃଷ୍ଣଙ୍କୁ ଜେମା କର ବିହା
ଥବିର[6] କରି ମନ   ପୁତ୍ରଙ୍କୁ ଆଗ୍ୟାଁ ଦିଅ   ଦ୍ୱାରେକା ପେଶୁ ବାରତୀଆ[7] ।୦।

ଥଏ[8] ବାରତା ପାଇଁ   ତଗର ପେଶି ରାଏ   ପୁତ୍ର କ୍ଷାମୁକୁ ଆଣିଲେ
ଥିର କରିଣ ମନ   ଦ୍ୱାରିକା ଲେଖ[9] ଦିଅ   ରାଏ ଯେ ଏମନ୍ତ ବୋଇଲେ
ଆହେ ବାବୁ, ଥୋକାଏ କହିଲୁ ତୋ ଆଗେ
ଥାନ କରି, କୃଷ୍ଣକୁ ବର ତୁ ସରାଗେ
ଥିର ନୋହିବ ସେ ଯେ   ଏ ବର ନ ବରିଲେ   ନିଶ୍ଚେଏ ମରିବ ସେ ରାଗେ[10] ॥୧୭॥

୧. ନିଶ୍ଚିତ, ୨. ଭିଆଇଛି, ରଖିଛି, ନିଶ୍ଚିତ କରିଛି, ୩.ଭାଙ୍ଗଇ, ବିରୋଧ କରଇ, ୪. ଟାଣ, ସ୍ଥିର, ୫. ସ୍ଥିର କରି, ୬. ନିଶ୍ଚିତ କରି, ୭. ବାର୍ତ୍ତାବହ, ୮. ନିଶ୍ଚିତ, ୯. ଚିଠିପତ୍ର,
୧୦. ଅଭିମାନ, ରାଗ, କ୍ରୋଧ



ଦରିଦ୍ର ନିଧି ଦେବୁ  କୃଷ୍ଣ ନିଶ୍ଚେ ବରିବୁ  ଆନରେ ତାର କାର୍ଯ୍ୟ ନାହିଁ
ଦୂତ କରିଣ ଅଛି[୧]  କୃଷ୍ଣ ବର ନିମନ୍ତେ  ତାହାକୁ ଆଣରେ ଭିଆଇଁ[୨]
ଆହେ ବାବୁ, ଯଶୋଦା ସୁତ ଖୋଜିଆଣ
ଦଶ ଦିଶେ, ରହିବ ତୋର ବଡ଼ପଣ[୩]
ଦେବତାମାନେ ଯାକୁ  ତୁଷ୍ଟି[୪] କରୁଅଛନ୍ତି  ସଭାବେ ଅଟଇ ସୁଜନ ।ଠା

ଦରିଦ୍ର ନିଧି ଯେବେ  ଇଷାଏ ଲୋଡ଼ି ଯାଇଁ[୫]  କେ ତାହା କରିବାକ ଆନ
ଦାମୋଦର ପରାଏ  ବର ମିଳିବ ତେବେ  ଏହାଉଁ ଅଛି କେଉଁ ପୁଣ୍ୟ
ଆହେ ବାବୁ, ବୁଧି ଯେ କରିଛି ଭଏଣୀ
ଦିଅ ବର,  ନନ୍ଦନନ୍ଦନ କୃଷ୍ଣ ଆଣି
ଦ୍ୱାରିକାପତି କଥା  ଶୁଣି କୁମର ମଣି  କୋପେ ଉଠିଲା ଶିର ଝୁଣି[୬] ।।୧୮।।

୧. ଦୂତ ପଠାଇଅଛି, ୨. ସ୍ୱାଗତ କରି, ନିମନ୍ତ୍ରଣ କରି, ୩. ମହତ ଭାବ, ବୀରତ୍ୱ ୪. ପ୍ରାର୍ଥନା, ୫. ଖୋଜିଯାଏ, ୬. ଓଟାରିବା, ଟାଣିବା, ଦର୍ପ ପ୍ରକାଶ କରିବା



ଧିକ ଜୀବନ ତୁମ୍ଭ  ନ ଯାଇ କାହିଁ ପାଇଁ  ପିତାକୁ କୁମର ବୋଇଲା
ଧାଇଁକ୍ଷ[୧] ଗଉଡ଼କୁ  ଦୋହିତା[୨] ଦେବ ବୋଲିଁ  ଧାତା ଏମନ୍ତ ଆଣି କଲା
ଆହେ ରାଏ, ଧିକ ଜୀବନ ତୁମ୍ଭର ହିଆ[୩]
ଧ୍ରୁବ[୪] ତେବେ, କୃଷ୍ଣକୁ କରିବ ତୁମ୍ଭେ ବିହା
ଧରଣୀ ମଧ୍ୟେ ଆଉ  ଝିଅକୁ ବର ନାହିଁ  ସମସ୍ତେ ବିଚାରିକ୍ଷ[୫] ଏହା ।ଠା

ଧ୍ରୁବ ଯେମନ୍ତ ତୁମ୍ଭେ  କୃଷ୍ଣକୁଁ ଝିଅ ଦେବ  ମତେ ତ ଆଗୁଁ[୬] ନ କହିଲ
ଧରଣିପତି ପୁତ୍ର  ବର ବରିଛି ମୁହିଁ  ମତେ ତ ଲାଜ କରାଇଲ
ଆହେ ରାଏ, ଧ୍ରୁବ ତ ଜାଣ କୃଷ୍ଣ କଥା
ଧରଣୀରେ, କରିଛି ଯେତେକ ବ୍ୟବସ୍ତା
ଧାଈକ୍ଷ[୭] ପାତେକକୁ  ଭଏ[୮] ତୁମ୍ଭର ନାହିଁ  ପୋହିଣି[୯] ମାରିଣ କଲା ହତ୍ୟା ।।୧୯।।

୧. ଧ୍ୟାଇଛ, ସ୍ଥିରକରିଛ, ୨. ଦୁହିତା, ଝିଅ, ୩. ହୃଦୟ, ୪. ସତ୍ୟ ୫. ବିଚାରିଛ, ସ୍ଥିର କରିଛ, ୬. ଆଗୁ, ପ୍ରଥମରୁ, ଆରମ୍ଭରୁ ୭. ଧାଇଁଛ, ଧ୍ୟାନ କରିବା, ଇଚ୍ଛାକରିବା, ୮. ଭୟ, ଡର ୯. ପୁତନା



ନିଚଏ[୧] ଜାଣ ଟିକି    ଷଣ୍ଢାକୁ ବଧ କଲା    ଗୋ ହତ୍ୟା ପାତେକ ଲମ୍ଭିଲା[୨]
ନନ୍ଦ ସୁତକୁ ଯେବେ    ଦୋହିତା ଦେବ ତେବେ    ସକଳ ତପ ଛଏ[୩] ଗଲା
ଆହେ ରାଏ, ନ ଜାଣି ବଣା[୪] କିଂପା ହୋଅ
ନିଶି କାଳ, ସପନ ପ୍ରାୟ କଥା କହ
ନାରାଏଣର କଥା    କେ ଅବା ନ ଜାଣଇ    ଏ କଥା ମୋ ଆଗେ ନ କହ ।୦।

ନମସ୍କାର କରିଣ    କୁମର ବୋଲୁଅଛି    ଶୁଣିମା ହୋଇଂ ସାବଧାନ
ନ ଜାଣଇ ରକ୍ମଣି    କୃଷ୍ଣ ବରିଛ (?) ତୁମ୍ଭେ    ବୁଧ ହୋଇଣ[୫] ବାଇପଣ[୬]
ଆହେ ରାଏ, ନିଚଏ ତୁମ୍ଭେ କି ନ ଜାଣ
ନବ ଯୁବ,-ତୀଙ୍କ କଥା କିଂପାଇଂ ଶୁଣ
ନିଜ ଇଛାଏ କନ୍ୟା[୭]    କାହିଂ ବର ବରଇ    ତୁମ୍ଭେ ତ ଶୁଣିଛ[୮] ପୁରାଣ ।୨୦।

୧. ନିଶ୍ଚିତ, ସ୍ଥିର ଭାବରେ, ୨. ଲଭିଲା, ଅର୍ଜିଲା ୩. କ୍ଷୟ, ନଷ୍ଟ ୪. ଭ୍ରାନ୍ତ ଭୁଲିଯିବା, ୫. ପଣ୍ଡିତ ହୋଇ ୬. ପାଗଳ ଭାବ, ୭. ଇଛାରେ, ୮. ଶୁଣିଛ



ପରିବାରିଙ୍କି ତୁମ୍ଭେ    ରାଇଣ[୧] ଆଗ୍ୟାଂ ଦିଅ    ବସି ତିଆରନ୍ତୁ[୨] ରକ୍ମଣି
ପରମାନନ୍ଦ ଲାଗି    ଦେହଟା ନ ହରାଉ    ଭାଇ ଯାଇଛି ବର ଆଣି
ଆହେ ରାଏ, ଗୋଆଳି[୩] ବୁଧି ସେ ନ କରୁ
ପାତେକୀ ସେ, କୃଷ୍ଣକୁ କିଂପା ଈକ୍ଷା କରୁ
ପରମାନନ୍ଦ କଥା    କେ ଅବା ନ ଜାଣଇ    ମନରେ ଅନ୍ତର[୪] ନ ଧରୁଂ ।୦।

ପାଦେ ପଡ଼ି କୁମର    ପିତାମାତାଙ୍କୁ କହିଂ    ଚେଦି ଦେଶକୁ ଚଳି ଗଲା
ପିତା ସନିଧେ ଶିଶୁ -    ପାଳ ଯେ ବସିଥିଲା    ତାହାକୁ ମାଳା ନେଇ ଦେଲା
ଆହେ ରାଏ, ପଂଚମି ଦିନ ବିଭାଘର
ପୁତ୍ର ଘେନି, ଶୁଭ ଲଗନେ[୫] ବିଜେ କର
ପାରସଇଦମାନ[୬]    ସକଳ ଘେନି ଯିବ    କାର୍ଯ୍ୟ ତ ଅଟଇ ତୁମ୍ଭର ।୨୧।

୧. ଡାକିଣ, ୨. ମନେଇବା, ବୁଝାଇବା ୩. ଗଉଡ଼ୁଣୀ, ମୂର୍ଖ, ୪. ଇତର ଭାବ, ଅନ୍ୟଥା, ଅନ୍ୟଭାବ ୫. ଲଗନ, ଲଗ୍ନ, ୬. ପାରିସଦ, ସଭାସଦ, ସାମନ୍ତ ରାଜା



ଫୁରଣା[୧] ହୋଇ ରାଜା   ଗୁଆ ପାନ ଘେନିଣ   ଜରାସନ୍ଧଙ୍କୁ ଆଣି ଗଲା
ଫାଇ[୨] ନୃପତି ଘେନି   ଦମଘୋଷ ରାଜନ   ଆପଣା ମନ୍ଦିରେ ଅଇଲା
ଆହେ ରାଏ, ଫେଡ଼ି[୩] କହଇ ଦମଘୋଷ
ଫାଇ ଦିନ, ନାହିଁ ସେ କରିବାକୁ କିସ
ଫୁରଣା ହୋଇ ଶିଶୁ-   ପାଳ ଯେ ବୋଲୁଅଛି   ଆମ୍ଭକୁ ଅପରୂବ[୪] କିସ ।୦।

ଫେଡ଼ିଣ[୫] ରକ୍ମଣ ଯେ   ପିତାଙ୍କୁ କହୁଅଛି   ବର ମୁଁ ଭିଆଇ[୬] ଅଇଲି
ଫାଇ ଦିବସ ନାହିଁ   ପଂଚମୀ ଦିନ ବିଭା   ତୁମ୍ଭର ଛାମୁରେ କହିଲି
ଆହେ ରାଏ, ଫୁଲଚନ୍ଦନ ଗୁଆପାନ
ଫାଇ କରି, ଭିଆଇ ଥାଅ ଦ୍ରବମାନ
ଫାଇ ନୃପତି ବର-   ଯାତିପଣେ ଆସିବେ   ମନରେ ନ ଧରିବେ ଆନ ।୨୨।

୧. ଆନନ୍ଦ, ଖୁସି, ୨. ବହୁ, ଅଧିକ, ୩. କପଟ ନ ରଖି, ୪. ଅପୂର୍ବ, ୫. ଖୋଲିକରି, ୬. ସ୍ଥିରକରିବା



ଭାବନା କାହିଁପାଇଁ
ଭବାନୀ ପତି[୧] ମୋତେ   ଦୟା ଛାଡ଼ିବେ[୨] ଯଦି   ସମସ୍ତେ ଥାନ୍ତୁ ସୁସ୍ତ[୩] ହୋଇଁ ।୦।
ଭୁବନ ଯାକ ମୋତେ   ଅନ୍ଧକାର ଦିଶୁଛି   ପିତାମାତାରେ କାର୍ଯ୍ୟ ନାହିଁ
ଭଗବାନଙ୍କୁ ବରିଁ   ନିଷ୍ଫଳ ହୋଇଲି ଗୋ   ପ୍ରାଣ ମୋ ଥିବ କାହିଁ ପାଇଁ
ଆଗୋ ସଖି, ଭାଇଏ ଯାହାର ରକ୍ମଣ
ଭୁବିପତି, ପିତା ମୋ ଭୀଷ୍ମକ ରାଜନ
ଭାବେ[୪] ଭଣିଲା[୫] ନନ୍ଦା   ଶ୍ରୀକୃଷ୍ଣ ନ ବରିଲେ   ଅଗ୍ନିରେ ହୋଇବି ଦହନ ।୨୪।

୧. ଶିବ, ୨. ଛାଡ଼ିବେ, ନକରିବେ, ୩. ଆନନ୍ଦରେ ୪. ଅନୁଭବରେ,
୫. ଭଣତିକଲା, ବର୍ଣ୍ଣନା କଲା



ମାତାଙ୍କ କ୍ଷାମୁରେଣ[୧] ଦାସୀମାନେ ଜଣାନ୍ତି ରକ୍ମଣି ବାରତା ସକଳ
ମରିବ ବାଳୀ ବୋଲି ବ୍ରତ[୨] କରିଣ ଅଛି ବର ବରିଲେ ଶିଶୁପାଳ
ଆଗୋ ମାଏ, ମୃତୁ ସେ ଘେନିଛି ନିଅତ[୩]
ମାଧବକୁ, ବର ବରିଛି ହୃଦଗତ[୪]
ମଧୁସୂଦନ ବିନୁ ଆନ ଶରଣ ନାହିଁ ତୁମ୍ଭକୁଁ କହିଲି ମୁଁ ସତ ।

ମାଏ ତା ଶୁଣି କରି ନୃପତି ଆଗେ କହିଁ ପୁତ୍ରକୁ କ୍ଷାମୁକୁ ଆଣିଲେ
ମରିବ ଭଇଣି ତୁମ୍ଭ କୃଷ୍ଣଙ୍କୁ ନ ବରିଲେ ବୁଝାଇ ଏମନ୍ତ କହିଲେ
ଆହେ ବାବୁ, ମୋହର ବୋଲ ତୁମ୍ଭେ କର
ମନେ ବର, ବରିଛି ଭଇଣି ତୁମ୍ଭର
ମାତା ପିତାଙ୍କ ବୋଲ କିଂପା ନ କର ବାବୁ ମରଣୁ ତାହାକୁ ଉଧର ॥୨୫॥

୧. ଛାମୁରେ, ଆଗରେ, ୨. ପ୍ରତିଜ୍ଞା, ପଣ , ୩. ନିଶ୍ଚିତ ୪. ମନରେ



ଜଗନାଥଙ୍କ କଥା ଶୁଣି ରୁକ୍ମଣ ବୀର କୋପେଣ ଗ୍ରଜିଣ[୧] ଉଠିଲା
ଯାଇଣ ଶିଶୁପାଳ ବରିଣ ଆସିଅଛି ସେ ଏବେ ନିଷ୍ଫଳ ହୋଇଲା
ଆହେ ରାଏ, ଜରାସନ୍ଧ ବରଯାତି
ଯାର ଭଏ, ଶ୍ରୀକୃଷ୍ଣ ପଳାଇ ଲୁଚନ୍ତି
ଜାଣନା ଅଷ୍ଟାଦଶ- ବାର ଯେ ଧାଡ଼ି ଦେଲା[୨] ବର ହୋଇଛି ତାର ନାତି ।୦।

ଯୁବତୀ ପୁଣ୍ୟ ଧର୍ମ- ପିତା ଯାହା କରଇଂ କନ୍ୟା କି ତାହା ଆନ କହିଂ
ଯୋଗେ ହୋଇଲି ମୁଇଂ ଆନ ଯେବେ ହୋଅତାଂ ଥୋଅନ୍ତା[୩] ଆଉ କାହିଂ ସହିଂ
ଆହେ ରାଏ, ଯାଇଣ କହ ଦୋହିତାକୁ
ଯେଉଂ ବର, ଭାଇଂ ତୋ ବରିଛି ତୁମ୍ଭକୁଂ
ଜଗନାଥର ତହୁଂ ବିଶୁଧ୍ୟ[୪]କୁଳପଣ ଚିନ୍ତା ନ କର ମାଗଣିକୁ ।୨୬।

୧. ଗର୍ଜଣ, ଗର୍ଜନ କରିବା, କ୍ରୋଧ ପ୍ରକାଶ କରିବା, ୨. ଆକ୍ରମଣ କରିବା, ୩. ରଖନ୍ତା , ୪. ବିଶୁଦ୍ଧ, ନିଷ୍କଳଂକ



ରାତ୍ର ଦିବସେ ମୋତେ   ନିଦ୍ରା ଆହାର ନାହିଁ   ବିଭା ଯେ ହୋଉଛି ନିକଟ
ରାଜା ହୋଇଣ ତୁମ୍ଭେ   ହେଳା[୧] କରିଣ ଥାଅ   ଆପଣେ ନ କର ଆକଟ[୨]
ଆହେ ରାଏ, ରାଜାଙ୍କୁ ଗୁଆ ପାନ ଦିଅ
ରାତ୍ରଦିବା, ଚାର ବରଗ[୩] ସର୍ବଠାଅ
ରୁକ୍ମଣି ବିଭା ବୋଲି   ସମସ୍ତେ ହେ ଜାଣନ୍ତୁ   ନଗ୍ରେଣ ଘୋଷଣ ଦିଆଅ ।

ରାଏ ତା ଶୁଣିକରି   ଡଗରାକୁ ହକାରି   ରାଜାଙ୍କୁ ଗୁଆ ପାନ ଦେଲେ
ରାତ୍ର ଦିବସେ ବୁଲି   ରାଜାମାନଙ୍କୁ ବରି   କୁଣ୍ଡି ନଗ୍ରିକୁ ଯାଅ ବୋଇଲେ
ସେ ଚାରମାନେ, ରଜନୀ ପ୍ରଭାତରୁ ଗଲେ
ରାଜାମାନଙ୍କୁ, ବହନ[୪] ବରିଣ ଅଇଲେ
ରୁକ୍ମଣ ବେଗେ ଯାଇଁ ପିତା ଛାମୁରେ କହିଁ   ସମ୍ଭାର ଭିଆଅ ବୋଇଲେ ।୨୭।

୧. ଡେରି, ବିଳମ୍ବ, ୨. ବାରଣ, ମନା, ଅଟକାଇବା, ୩. ପଠାଅ, ୪. ଶୀଘ୍ର, ତତ୍କ୍ଷଣାତ୍



ଲମ୍ବଟି[୧] ନାହିଁ ଦିନ   ହେଳା କିଂପାଇଁ କର   ସମସ୍ତ ଲାଗଇ ତୁମ୍ଭକୁ
ଲାଜ ତୁମ୍ଭର ସିନା   ବାଳୁତ ପୁତ୍ର ଆମ୍ଭେ   ଆଗ୍ୟାଁଏ ବରିଲୁ ବରକୁ
ଆହେ ରାଏ, ଲାଗଇ ତୁମ୍ଭକୁ ସମସ୍ତ
ଲାଭ ହାନି, ନ ଜାଣୁ ଆମ୍ଭେ ବାଳସୁତ
ଲମ୍ବଟି ନାହିଁ ଦିନ   ସକଳ ସଂଚା[୨]ମାନ   ଭିଆଇ ଥାଅ ଦ୍ରବ ମାନନ୍ତ ।୦।

ଲାଜ ନ ପାଇ ଯେମନ୍ତେ   ସମ୍ଭାର ଭିଆଇ ଥାଅ   ସକଳ ସଞ୍ଚା ନିରିବାଣ[୩]
ଲୋଡ଼ିବା[୪] ଯେତେବେଳେ   ଛାମୁରେ ଦେଉଥିବ   ଏମନ୍ତ କରିବ ଭିଆଣ
ଆହେ ରାଏ, ଲାଗଇ ଯେମନ୍ତ ବିଭାଘର
ଲାଜ ଆଉ, ନପାଉଁ ରାଜନ ସଭାର
ଲକ୍ଷେକ ରାଜା ତୁଲେ   ନୃପତି ଜରାସନ୍ଧ   ଆସି ମିଳିବେ ତୁମ୍ଭ ପୁର[୫] ।୨୮।

୧. ଦୀର୍ଘ, ଅଧିକ, ୨. ଖାଦ୍ୟ, ପାନୀୟ ଓ ବ୍ୟବହାର ଉପଯୋଗୀ ଦ୍ରବ୍ୟ, ୩. ନିର୍ମାଣ, ତିଆରି, ଯୋଗାଡ଼, ୪. ଖୋଜିବା, ଆବଶ୍ୟକ ମଣିବା, ୫. ଘର



ବାରତା ପାଇଂ ଦେବୀ　ମନେ ବିଶାଦି ହୋଇଂ　ରାଜାଂକ ଛାମୁରେ କହିଲେ
ବିଭା ହୋଇବ ଯେହୁ　ତାହାର ଈଛା[1] ନାହିଁ　ରାଣୀ ଯେ ଏମନ୍ତ କହିଲେ
ଆହେ ରାଏ, ବୁଧିତ ମୋତେ ଦିଶୁନାହିଁ
ବୋଲଇ ସେ, ପ୍ରାଣ ତେଜିବିଂ କୃଷ୍ଣ ପାଇଂ
ବର ବରିଲା ମୋତେ　ଶିଶୁପାଳ ଛାରକୁ[2]　ପ୍ରାଣ ମୋ ଥିବ କାହିଁପାଇଂ ।୦।

ବଚନ ଶୁଣି ରାଜା　ମନ ବିଶାଦି ହୋଇ　ବୋଲନ୍ତି ମହାଦେଈଂ[3] ଚାହିଁ
ବେଗେଣ ଯାଅ ତୁମ୍ଭେ　ରୁକ୍ମଣି ସନିଧକୁ　ସମସ୍ତ କହିବ ମଣାଇଂ[4]
ଆଗୋ ମାଏ, ବଡ଼ ସୁନ୍ଦର ଶିଶୁପାଳ
ବର ପଣେ[5], ଯୋଗାଇଂ[6] ଦମଘୋଷ ବାଳ[7]
ବେଗେ ଯାଇଣ ମାଏ　ରୁକ୍ମଣିଙ୍କି କହନ୍ତି　ତୁ ଆଗୋ ନୋହସି ବିକଳ ।୨୯।

୧. ଇଛା, ୨, ଛାର, ସାମାନ୍ୟ, ୩. ମହାରାଣୀ, ୪. ବୁଝାଇ, ୫. ଭାବରେ, ରୂପରେ, ୬. ଯୋଗ୍ୟ, ଉପଯୁକ୍ତ, ୭. ପୁଅ



ଶ୍ରୀକୃଷ୍ଣ ବରପଣେ　ଭାଇ ତୋର ବାଛିଲା[1]　ଅନେକ ଅବିଗୁଣ[2] ଅଛି
ଶିଶୁପାଳକୁ ଯେବେ　ଭାଇ ବରିଲା ତୋର　ବିଭାତୁ ହୋଅ ଗୋ ମୃଗାଛି[3]
ଆଗୋ ବାଳି, କୃଷ୍ଣର ଅଷ୍ଟ ପାଟରାଣୀ
ସଭାବେ ଗୋ, ହୋଇବେ ତୋର ସପତଣୀ[4]
ସରପ କଥାମାନ　ମାଆଙ୍କ ଠାରୁ ଶୁଣି　ବଚନ କହନ୍ତି ରୁକ୍ମଣି ।

ସତ କହିଲ ମାଏ　କେ ଆନ କରିବ ଗୋ　ଶ୍ରୀକୃଷ୍ଣ ଅଷ୍ଟ ପାଟନାରୀ
ଷୋଳ ସହସ୍ର ଗୋପୀ　ଏକା ରମିଲେ ଗୋ　ଷୋଳ ସହସ୍ର ରୂପ ଧରିଂ
ଆଗୋ ମାଏ, ସିଙ୍ଘ[5] ଘରଣୀ ଅଟଇ ମୁଇଂ
ଶିହାଳ[6] ଶାବକ[7] କି ନିଅଇଂ ଛଡାଇ[8]
ସାତ ବରଷ ପୁଅ　ଧ୍ରୁବ ପ୍ରସନ କଲା　ଅମର ସ୍ୱର୍ଗେ ଅଛି ରହିଂ ।୩୦।

୧. ମନ୍ଦଗୁଣ ଦର୍ଶାଇବା, ୨, ମଂଦ ଆଚରଣ, ଦୁର୍ଗୁଣ, ୩. ମୃଗାକ୍ଷି, ମୃଗପରି ଚଂଚଳ ଓ ସୁଂଦର ଆଖି ଯାହାର, ୪. ସଉତୁଣୀ, ୫.ସିଂହ, ୬. ଶୃଗାଳ, ବିଲୁଆ, ୭. ଛୁଆ, ୮. ଛଡ଼ାଇ



ସ୍ୱରୂପ କଥା ଶୁଣି  ବାହୁଡ଼ି ଯାଇ ରାଣୀ[୧]  ରାଜାଙ୍କ ଛାମୁରେ କହିଲେ
ଶିଶୁପାଳକୁ ଚାର  କ୍ଷଣହେ ଇଛା ନାହିଁ[୨]  ରାଣୀ ଯେ ଏମନ୍ତ କହିଲେ
ଆହେ ରାଏ, ସଭାବେ ଲାଜ ଉପୁଜିବ
ସତେହେଂ କି, ଶୁଭେଣ ବିଭା ଯେ ହୋଇବ
ସତ ବିଭା ବେଳକୁ  ବଡ଼ ଗୋଳ[୩] ହୋଇବ  ଯାହା ସେ ଲେଖିଛି ଦଇବ ।୦।

ଶୁଣି ଭୀଷ୍ମେକ ରାଏ  ତବଦ[୪] ହୋଇଲା ସେ  ରାଣୀଙ୍କ ଶୁଣିଣ ବଚନ
ସେ ଯେ ଶ୍ରୀକୃଷ୍ଣଙ୍କୁଂ  ବର ବରିଲା ମନେ  କେ ତାହା କରିବାକ ଆନ
ଆଗୋ ରାଣି , ଶୁଣିଲେ ଚଳିବ ରକ୍ମଣ
ସତେ ସେ କି, ତାହାକୁ ନେମେ ନାରାୟେଣ
ସଭାବେ ମନରେ ସେ  ବରିଅଛି କୃଷ୍ଣଙ୍କୁଂ  ଦୁଃଖ ଫେଡ଼ିବେଂ[୫] ହରି ପୁଣ ।୩୧।

୧. ଫେରିଯାଇ, ୨. ଇଚ୍ଛା, ୩. କନ୍ଦଳ, ୪. ସ୍ତବ୍ଧ, ୫. ଦୂର କରିବେ, ମୋଚନ କରିବେ





ସମସ୍ତ ସଖୀ ଜନ　ଡାଇଂ[1] ରୁକ୍ମଣି ଦେବୀ　ବୋଲନ୍ତି କିସ ଗୋ କରିବା
ଶିଶୁପାଳ କ୍ଷାରକୁ　ବର କରିଛି ଭାଇଂ　ପଚଂମୀ ଦିନ ହୋଇବ ବିଭା
ଆଗୋ ସଖୀ,　ସତେହେଂ କି କୃଷ୍ଣ ଆସିବେ
ସତେହେଂ କି ରାଜାଙ୍କ ମଧ୍ୟୁ ମତେ ନେବେ
ସେ ଅଛନ୍ତି ଦ୍ୱାରିକା ପୁରିଂ　ମୁଁ ଅଛି କୁଣ୍ଡି ନଗରୀଂ କେମନ୍ତେ ବାରତା ପାଇବେ ।

ସତେ ହେ ସଖୀ ଆଗୋ　ଶ୍ରୀକୃଷ୍ଣ ଆସିବେ କି　ଦ୍ୱାରିକା ଘେନି ମୋତେ ଯିବେ
ଶାମୁକେ ମୁକୁତା ଗୋ　ସିଧୁଂ ଭିତରେ ଅଛି　ଚିହ୍ନରା ଚିନି[2] ଘେନି ଯିବେ
ଆଗୋ ସଖୀ, ସମସ୍ତେ ବିଚାରିଣ କହ
ଶ୍ରୀକୃଷ୍ଣର, କ୍ଷାମୁରେ ଲେଖ ଲେଖି ଦିଅ
ସେହୁ ତ ମହାପ୍ରଭୁ　ପାଳୁଛ ଅନ୍ତର୍ଯାମି　ବିନୋଇ କରି ଲେଖ ଲିହ[4] ।୩୨।

୧. ଡାକି, ୨. ଚିହ୍ନି, ଜାଣି ୩. ବିନୋଇ, ନମ୍ରଭାବ ୪. ଲିହ, ଲେଖ



ହରଷେ ସଖୀ କୃଷ୍ଣ　କ୍ଷାମୁକୁଂ ଲେଖି ବାର୍ତା　ରକ୍ମଣି ଆଗରେ କହିଲେ
ହରଷ ହୋଇ କରି　ଭୀସ୍ମେକ ନନ୍ଦନି ସେ　ସଖୀକିଂ କୋଳାଗ୍ରତ କଲେ
ଆଗୋ ସଖୀ, ହାକିଣ[1] ପେସ[2] ତୁମ୍ଭେ ଦୂତ
ହେଳା ନିକି,　କର ଗୋ ପ୍ରାଣର ସଙ୍ଗାତ
ହରଷେ ଲେଖ ଦେବା　ଦ୍ୱାରିକା ବେଗେ ଯାଉଂ　କାହାକୁ ପେଷିବା ଗୋ ଦୂତ ।୦।

ହୋଇବ ବିଚକ୍ଷଣ[3]　କହି ପୁଛି ପାରିବ　କ୍ଷାମୁକୁ ହୋଇବ ଭାଜନ
ହୃଦରେ ଘେନିଥିବ　ମୋହର ବେଦନା ସେ　କହି ତୋଷିବ ତାଙ୍କ ମନ
ଆଗୋ ସଖ୍ୟି, ହେଳା ନ କରି ତାକୁଂ ଆଣ
ହୋଇବ ସେ, ବିଶେଷ୍ଟ[4] ବିବେକ ବ୍ରାହ୍ମଣ
ହେଳା ନ କରି ସେହୁ　ବେଗେ ଦ୍ୱାରିକା ଯିବ　ଘେନି ଆସିବ ନାରାଏଣ ।୩୩।

୧. ଡାକିଣ, ୨. ପଠାଅ, ୩. ଚତୁର, ୪. ବିଶିଷ୍ଟ, ବିଖ୍ୟାତ



କ୍ଷଣକେ ସଖିମାନେ    ବିପ୍ର ଆଣିଲେ ଖୋଜି    ଧ୍ରାମିକ[୧] ବିବେକ ବ୍ରାହ୍ମଣ
କ୍ଷଣେ ନ ରହି ବିପ୍ର    ବେଗେ ଦ୍ୱାରିକା ଗଲା    ଘେନି ଆସିବ ଭଗବାନ
ଆହେ ବିପ୍ର,    କ୍ଷାମୁରେ ଲେଖି ନେଇ ଦେବ
କ୍ଷଳାଇ[୨] ଯେ,    ଅନେକ ବିନୋଇ କହିବ
କ୍ଷଣେ ନ ରହି ଯେବେ    ଶ୍ରୀକୃଷ୍ଣ ଆଣିପାରୁଁ    ତେବେ ସେ ପ୍ରାଣ ମୋ ରଖିବ ।୦।

କ୍ଷାଡ଼ିଣ[୩] ବିଶ୍ୱ ମନ    କହିଲା ଶୁଧ ଚିତେ    ଚନ୍ଦନ ପଙ୍କେ ମୁଦ ଦେଲା
କ୍ଷଣ କ୍ଷଣକେ ବାଳୀ    ବିପ୍ରର ପାଦ ଧରି    ପ୍ରଳମ୍ଭ କରିଣ କହିଲା
ଆହେ ବିପ୍ର, କ୍ଷକ୍ଷନ୍ଦେ[୪] ଚଳ ତୁ ଦ୍ୱାରିକା
କ୍ଷାମୁରେଣ, ମୋର ସନ୍ଦେଶ ନେଇ ଦେଖା
କ୍ଷଳାଇଁ କଥା କହି    ଲେଖ କ୍ଷାମୁରେ ଦେଇଁ    ଶ୍ରୀକୃଷ୍ଣ ଘେନି ଆସ ଏକା ।

କ୍ଷଣକେ ଗଲା ବିପ୍ର    ଦ୍ୱାରିକା ଭୁବନକୁ    ଘେନିଣ ରୁକ୍ମଣି ସନ୍ଦେଶ
କ୍ଷନ୍ଦେ[୫] ରୁକ୍ମଣି ଦେବୀ    ବିପ୍ରକୁ ପେସି ଦେଇଁ    ମଣୋହି[୬] କରିଣ ବିରସ
ଆଗୋ ସଖି, କ୍ଷଡ[୭] ରସ ଭୋଜନ ପାନ
କ୍ଷାମୁରେଣ, ବ୍ରାହ୍ମଣୀ ଯୋଗାଇଲେ ଅନ
କ୍ଷଣକେ ଆଚେବନ    ସାରି ରୁକ୍ମଣି ଦେବୀ    ପଲଙ୍କେ କଲେକ ଶୟନ ।୦।
କ୍ଷଣେ ନ ରହେ ମନ    ଶୁଣ ଗୋ ସଖିଗଣ    ଏ ମନ ଅତି ଦୁରାଚାର
କ୍ଷତ୍ରିବର ସୁନ୍ଦର    ଦୟା କରିବେ ଯେବେ    ତେବେ ମୋ ନିର୍ମଳ ଶରୀର
ଆଗୋ ସଖି, କ୍ଷୁଦ୍ର ଯେ ବୁଦ୍ଧି ନନ୍ଦା ମାଗେ
କ୍ଷିଦ୍ର ସଖି, ସନେକ ମୁନିଜନ ପାଦେ
କ୍ଷେମା କରିବ ପ୍ରଭୁ    ଦୟା ସାଗର ହରି    ପଦ୍ମ ନୟନ ମୁଖ ଜାଗେ ।୩୪।
ଶ୍ରୀ ଗଣନାଥ ରଖ ଶ୍ରୀ ଗୁରୁ ନାରଣକୁ

୧. ଧାର୍ମିକ, ୨. ଛଳାଇ, ଚତୁରତାର ସହିତ, ୩. ଛାଡ଼ିଣ ୪. ତତ୍‌କ୍ଷଣାତ୍, ଶୀଘ୍ର, ୫. ଛନ୍ଦେ, ଛ', ୬. ଖାଇବା, ୭. ଷଡ଼, ସତର୍କତାର ସହିତ





ବହୁତ ସାନଂଦରେ[୧] ବିପ୍ର ଦ୍ୱାରକା ଗଲା ଯାଇ ଭେଟିଲା ଜଗନାଥ
ବିପ୍ରକୁ ନମସ୍କାର ଦ୍ରିବ[୨] ଆସନ ଦେଇ ପୁଛନ୍ତି କି କାର୍ଯ୍ୟେ ଆଗତ
ଆହେ ରାଏ, ବିପ୍ର ବିନୋଇ[୩] କୃତ[୪] କୃତ
ବୋଲଇଂ ମୁଁ, ଭୀସ୍ମେକ ନନ୍ଦିନୀର ଦୂତ
ବେଗେ ପେସିଲା ମୋତେ ଲକ୍ଷେ ରାଜା ପରଜା ତୁମ୍ଭରେ ବଳିଲା ତା ଚିତ[୫] ।୦।

ବର୍ଣ୍ଣବି ରୂପଗୁଣ କେତେ କହିବି ତାର ସଦେଂଶ[୬] ଦେଇଛି ସୁନ୍ଦେରୀ[୭]
ବ୍ରହ୍ମା ଇନ୍ଦ୍ର ଶକଂର ଯେ ପାଦ ଅଗୋଚର ମୁଁ ତା ଛୁଇଂବି[୮] ବେନିକରି
ଆହେ ରାଏ, ବିପ୍ରର ଲେଖ ପଢ଼ି ହସି
ବୋଲନ୍ତି ସେ, ଯାଇଂ ଆଣିବୁ ଶୁଭ୍ରକେଶୀ[୯]
ବହନ ସାଜ ରଥ କୁଣ୍ଡି ନଗ୍ରକି ଯିବା ଦାରୁକେ କହନ୍ତି ବିଶ୍ୱାସି ।୬।

୧. ଅତି ଆନନ୍ଦ, ୨. ଦିବ୍ୟ, ୩. ବିନୟ ଭାବ, ୪. ଧନ୍ୟ, ୫. ଚିତ୍ତ, ମନ,ହୃଦୟ, ୬. ବାରତା, ଖବର, ୭. ସୁନ୍ଦରୀ, ୮. ଛୁଇଁବି, ୯. ଉଜ୍ଜଳ କେଶ ଯାହାର





Source: Author, Digitized by PPRACHIN, SOA



ଆଗୋ ସଖି, ରସିକାମଣି ମୁଇ କାହିଁ
ରସ ଅବା, ଜାଣନ୍ତି ଗଉଡାର ସାଇଁ
ରାତ୍ର ଦିବସେ ମୋତେ ଯୁଗ ମାଡ଼ି ପଡୁଛି ଶିଶୁପାଳ ଆସୁଛି ବାହି ।୦।

*** କପୋରାରେ ସଖୀ ଶ୍ରୀଖଣ୍ଡି ଚନ୍ଦନ ଗୋ କ୍ରପୁର କସ୍ତୁରୀ ମିଶାଇ
ରଚିଛି ଶ୍ରୀକୃଷ୍ଣର ଶ୍ରୀ ଅଙ୍ଗେ ଲେପିବାକୁ ନରକେ ପଡୁଅଛି ଯାଇଁ
ଆଗୋ ସଖୀ, ରଙ୍ଗ କାଛିଣ ଅଛି ମୁହିଁ
ରଙ୍ଗ ମୋର, ବଢ଼ନ୍ତା କଳାବନ୍ତ ନାହିଁ
ରାଜାମାନଙ୍କ ଆସୁ ଦେହି ମୁଁ ନ ରଖିଇଁ ରଖ ଶ୍ରୀକୃଷ୍ଣ ମୋତେ ଦେଇଁ ।୮।



ଜଗନାଥଙ୍କ ଥାଉ ଆଉ କାହାକୁ ଭଏ ସତ ଏମନ୍ତ ପ୍ରାଏ ମଣୁ
ଜରାସନ୍ଧର ପ୍ରାଏ ଲକ୍ଷେ ନୃପତି ଥିଲେ ଦେଖି ଉଡ଼ିବେ ରେଣୁ ରେଣୁ
ଆଗୋ ମାଏ, ଜରାସନ୍ଧ କୀଟ ମାତର
ଯେଉଂ ପ୍ରଭୁ, ସଘାଁରେ ବିଶ୍ୱ ଭାରାବର
ଯାହାର ନାମେ କୋଟି ଯମକୁ ଭଏ ନାହିଁ ଏ ଛାର କେତେକ ମାତର ।୦।
ଜାନକୀଶରେ ଦଶ- ଶିର ମରଣ ଦେଖ ହିରଣ ହରିଣାକ୍ଷ ବୀର
ଯା ପାଦ ତିନିଗୋଟି ବ୍ରହ୍ମାଣ୍ଡ ଘୋଟିଲା ଗୋ ବଳିକି ଚାପିଲେ ପାତାଳ
ଆହେ ରାଏ, ସେହି ଯେ ବ୍ରହ୍ମାଣ୍ଡ ଠାକୁର
ଯେଉଂ ପ୍ରଭୁ, ପୁରୁଷ ସିଂଘ ବୀରବର
ଯାବତ ବ୍ରହ୍ମାଣ୍ଡ ସେ, ହୃଦରେ ଧରି କରି ଥିଲେଟି କଳପ ବଟର ।୯।





ମୋ କ୍ଷାର[୧] ଭଗତି[୨] କାହିଁ    କୃଷ୍ଣ ପାଇବି ମୁଁଇ    ନିଶ୍ଚେଏ ମରଣ ହୋଇଲା
ମଧୁକରର ଆସେ    ଅମ୍ବୁଜ ଫୁଟିଅଛି    ମାଳତି ଲାଗି ପାଷୋରିଲା
ଆଗୋ ସଖୀ,  ମନ ମୋ ହୋଉଛି ଅଧିର
ମିଳିଲେ ଗୋ,  ସକଳ ନୃପତି ମନ୍ଦିର
ମଧୁସୋଦନ[୩] କୋଟି    ମୁଖଚନ୍ଦ୍ର ମଣ୍ଡୋଳ[୪]    ନ ଦେଖି ଯିବ ଗୋ ଶ୍ୱରୀର[୫] ।୦।

ମତ[୬] କେଶରୀ[୭]ନାରୀ    ଜମ୍ବୁକ[୮] ନେଉଅଛି    ଅଗ୍ନିରେ ପଡୁଅଛି ମାଛି
ମହାବ୍ୟାଧି ଘୋଟିଛି    ମଲୁ[୯] ଅନ୍ତଯାକରେ[୧୦]    ବୈଦ୍ୟ ତ ନଇଲେ ଶ୍ରୀବଛି[୧୧]
ଆଗୋ ସଖୀ,  ମରିବି ରୁକ୍ମଣ ଉପର
ମୋତେ କିଂପା,  ଶ୍ରୀକୃଷ୍ଣ ନ ବରିଲା ବର
ମଲା ରୁକ୍ମଣୀ ବୋଲି    ସବୁ ଶରଧା[୧୨] ସରୁଂ    ବାହୁଡ଼ି ଯାଉ ଶିଶୁପାଳ ।୧୦।

୧. ଛାର, ୨. ଭକ୍ତି, ୩.ମଧୁସୂଦନ, ୪. ମଣ୍ଡଳ. ବିମ୍ବ, ୫. ଶରୀର, ୬. ମତ୍ତ, ପାଗଳ. ୭. ସିଂହ, ୮. ବିଲୁଆ, ୯. ମଲୁ, ରୋଗୀ , ୧୦. ଅନ୍ତନଳୀ
୧୧. ଶ୍ରୀବସ୍ତ, ଶ୍ରୀକୃଷ୍ଣ, ୧୨. ଶ୍ରଦ୍ଧା, ଆନନ୍ଦ



ଭୂଷଣ ଚନ୍ଦ୍ର ଯେହ୍ନେ    ନକ୍ଷତ୍ରଗଣ ଘେନି[୧]    ରୁକ୍ମଣୀ ଘେନି ସର୍ବ ସଖୀ
ଭବ-ସାଗରେ ବୁଡ଼ି    ନାବ ପାଇଲୁ ହରି    କି ମୃତ୍ୟୁ ଇକ୍ଷୁ ଚନ୍ଦ୍ରମୁଖୀ
ଆହେ ମାଏ,  ଭ୍ରଥା ଯାହାର ଭଗବାନ
ଭଲେ ମାଗୋ,  ପାହୁ[୨] ରଜନୀ ଆଜଦିନ
ଭୁବି[୩] ନୃପତିମାନେ    ଲୋଚନେ ଦେଖୁଥିବେ    କୃଷ୍ଣ ଫେଡ଼ିବେ[୪] ଅଭିମାନ[୫] ।୦।

୧. ତାରାଗଣଙ୍କ ମଧରେ ଚନ୍ଦ୍ର ପରି ଦିଶୁଥିବା ରୁକ୍ମିଣୀ, ୨. ଶେଷ ହେବା, ୩. ସଂସାର
୪. ମୁକ୍ତ କରିବେ, ହରଣ କରିବେ, ୫. ଦୁଃଖ. ୬.ଭୃଂଗ, ଭ୍ରମର ୭, ବେଙ୍ଗୁଲି, ୮.ଭୃତ୍ୟ,
ସେବକ ୯. ବତ୍ସଳ, ୧୦. ଲଭିବୁ, ଲାଭ କରିବୁ, ୧୧. ଭାଗିଗଲା, ଭାଗିଂଗଲା,
୧୨. ପ୍ରତକ୍ଷରେ, ଆଖି ଆଗରେ, ୧୩. ଭ୍ରମ, ବିଚଳତ ମନ, ୧୪. ଜନ୍ମ ସମୟରୁ

ଭୃଗଂ[୬] ସେ ଜାଣଇ ସଖୀ    ପଦ୍ମର ବାସନା ଗୋ    ମଣ୍ଡୁକୀ[୭] ସନିଧରେ ଥାଇଂ
ଭୃତ[୮] ମକ୍ଷଳ[୯] ହରି    ବିପ୍ରଙ୍କୁ ସଙ୍ଗେ ଘେନି    ଆସିବେ ରଜନୀ ପୁହାଇଂ
ଆଗୋ ମାଏ,  ଭଲେ ଲମ୍ଭିବୁ[୧୦] ଜଗନାଥ
ଭଲେ ମାଗୋ,  ଜନି ବାସନା ତୁମ୍ଭ ସତ
ଭଗତି ପରସନେ    ଗଜ ଇନ୍ଦ୍ର ତରିଲା    ତୁମ୍ଭେ ରହଇ କି ଆରତ ।୦।
ଭାଗିଗଲା[୧୧] ଯେ ସଭା    ସଏମ୍ବର କାଳେଟି    ଥିଲେଟି ଲକ୍ଷେ ରାଜାମାନେ
ଭଗବାନ ମହିମା  ପ୍ରତକ୍ଷେ[୧୨] ଦେଖିଲୁ ଗୋ    ରାଜାଏ ଉଡ଼ିଲେ ଗଗନେ
ଆଗୋ ମାଏ, ଭ୍ରାନ୍ତି[୧୩] କରୁଛି କାହିଂପାଇଂ
ଭଲେ ମାଗୋ, ଜନିକାଳୁ[୧୪] ଜାଣଇଂ ମୁହିଂ
ଭୀଷ୍ମେଁକ ନ ଜାଣନ୍ତି    ଅନ୍ତୋଡିଶାଳେ ତୋତେ    କୃଷ୍ଣେ ବରିଲେ ମାଳା ଦେଇ ।୧୧।



ବାଜିଲା ଦିବିଦିବି[୧] ଢୋଲ ଦବଲୁଦମା[୨] ଟମକ[୩] ନିସାଣ[୪] ମହୁରିଂ
ବୀରସିଂଘା[୫] ଅନିଶ[୬] କୋଟି ଶଂଖ ଶବଦେ ଗହଳେ ବ୍ରହ୍ମାଣ୍ଡ ଉଛଳି
ଆହେ ରାଏ, ବିସମ ରଥ ଅଶ୍ୱ ଗଜ
ବିମଳ ଯେ, ଚାମର ପାଟ କ୍ଷତ୍ର[୭] ଧ୍ୱଜ[୮]
ବିବିଧ ନର ବଳ କୁମ ( ? ) ଟଳଟଳ ଲକ୍ଷେ ନୃପତି ତହିଁ ସଜ ।୦।

ବିଜେକଲା ସମ୍ଭ୍ରେ[୯] ନୃପତି ଜରାସଧଂ ଲକ୍ଷେ ନୃପତି ଘେନି ସଂଗେ
ବହୁତ ବଳ[୧୦] ଘେନି ଭୀସ୍ମେକ ନନ୍ଦନ ସେ ପାକ୍ଷୋଟି[୧୧] ଆସଇ ସରାଗେ
ଆହେ ରାଏ, ବହୁତ ସଇନ ମିଳିଲା
ବନଭୁବି[୧୨], ଭୀସ୍ମେକ କଟେକ ପୂରିଲା
ବିଭା ଗହଳ ବୋଲି ସମସ୍ତେ ଧୁଅାଁଧୁଇଂ[୧୩] ମଂଗଳ ମହୁରି ଶୁଭିଲା ।୧୨।

୧. ଡିବିଡିବି, ୨. ଦମାଲୁ, ମାଦଳ, ୩. ଯୋଡ଼ି ନାଗରା, ୪. ବଡ଼ବାଜା, ୫. ବଡ଼ମୁହ ଥିବା ତୂରୀ ବା କାହାଳୀ ୬.ଚମଡ଼ା ତିଆରି ବାଦ୍ୟ ବିଶେଷ, ୭. ଛତ୍ର, ଛତା, ୮. ପତାକା,
୯. ଯାକଜମକରେ, ଆଡମ୍ବର ସହ, ୧୦. ସୈନ୍ୟସାମନ୍ତ, ୧୧. ପାଛୋଟି ଆଣିବା, ସ୍ୱାଗତ କରିବା, ୧୨. ଭୂମି, ୧୩. ଏଣେତେଣେ ଧାଇଁବା



ଫାଇ[୧] ନୃପତି ଘେନି ନୃପତି ଜରାସଧଂ କ୍ଷାୟା ମୋଣ୍ଡୋପେ[୨] ବିଜେ କଲା
ଫୁରୁଣୀ[୩] ହୋଇ ରାଜା ଦମଘୋଷକୁ[୪] କହି ବର ବେଦୀରେ ବସାଇଲା
ଆହେ ରାଏ, ଫାଇ ବିକଳ କାମେନିଙ୍କର
ଫୁରୁଣୀ ଗୋ, ଦେଖି ଭାଗିଲା[୫] ନାରୀକଂର
ଫୁଲିଲା[୬] ପାପ ନାହିଁ ଅପୂର୍ବ ଯୁବତୀ ଗୋ ବର ହୋଇଲା ଶିଶୁପାଳ ।୦।

ଫୁଟୁ[୭] ଅଛନ୍ତି ଧାଇ ସମସ୍ତ ଦାସୀମାନେ ବ୍ରାହ୍ମଣ ନଇଲା ତ ଦୂତ
ଫୁଟୁଛି[୮] ହୃଦ ବାଳୀ ନିମିଷ ଯୁଗ ପ୍ରାୟେ ମରଣେ କରିଛି ନିଯ୍ୟତ[୯]
ଆହେ ରାଏ, ଫୁଟି[୧୦] ଧରଣୀ ତଳେ ଶୋଇଂ
ଫୁଟି ସେ ଶ୍ରୀ, କୃଷ୍ଣ ସୁମରି ଲୁହ ବହିଁ
ଫଣୀର[୧୧] ଜାଳା[୧୨] କି ଏ ବାଣେ ହରିଣୀ ଯେହ୍ନେ[୧୩] ଶ୍ରୀକୃଷ୍ଣ ସନ୍ଦେଶ ନ ପାଇଂ ।୧୩

୧. ବହୁତ, ୨. ଛାୟାମଂଡ଼ପ, ଛାମୁଡ଼ିଂଆ ଥିବା ମଣ୍ଡପ, ୩.ଆନନ୍ଦ ମନ, ୪. ଦମଘୋଷ, ୫. ଭାଗିଂଲା, ତୁଟିଯିବା,
୬. ଦେଖାଯିବା ପରି, ବିଶେଷ, ୭. ଦୁଃଖରେ ଫାଟି ପଡୁଛନ୍ତି, ୮. ଦୁଃଖରେ ଛାତି ଫାଟିଯାଉଛି, ୯. ନିଶ୍ଚିତ, ୧୦. ଅତ୍ୟନ୍ତ ଦୁଃଖରେ, ୧୧. ସାପ, ୧୨. ଜ୍ୱାଳା, ଯନ୍ତ୍ରଣା,
୧୩. ଶରର ଆଘାତରେ କ୍ଷତାକ୍ତ ହରିଣୀ ପରି



ପରାପର[୧] ବେଦନା  ଜାଣନ୍ତି ଜଗନାଥେ  ରକ୍ମଣି ବେଦନା ଜାଣିଲେ
ପବନୁ ବେଗେ ନନ୍ଦି -  ଘୋଷ ଦାରୁକ ବାହିଂ  ବ୍ରାହ୍ମଣ ଘେନି ବିଜେ କଲେ
ଆହେ ରାଏ, ପ୍ରବେଶ ଭୀଷ୍ମେଁକ ରାଜ୍ୟେଣ
ପ୍ରସନେ[୨] ସେ, ଆଗ୍ୟାଁ ଦିଅନ୍ତି ବିପ୍ରଗଣ
ପ୍ରବେଶ ହୋଇଲୁ ଆମ୍ଭେ  କହ ରକ୍ମଣି ଆଗେ  ଅହିଖ୍ୟେଂ[୩] ଆସୁ ଏହି କ୍ଷଣ ।୦।

ପଶିଲା ଦ୍ୱିଜବର  ଆଗ୍ୟାଁ ପାଇ କଟେକ  କୋଟିଏ ନିଧି[୩] କି ପ୍ରାପତ
ପରମ ସାନନ୍ଦେଣ  ବ୍ରାହ୍ମଣ ନାରାଏଣ  ଲକ୍ଷ୍ମୀର କାର୍ଯେଣ ଆଗତ
ଆହେ ରାଏ, ପ୍ରବେଶ ହୋଇଲେ ବ୍ରାହ୍ମଣ
ପରିବାରୀ, ବିପ୍ର ଭେଟିଲେ ତତକ୍ଷଣ
ପ୍ରସନେ ଧାଇଂ ଧାଇଂ  କହନ୍ତି ଆଗୋ ମାଏ  ବିପ୍ର ଅଇଲେ ଏହିକ୍ଷଣ ।୧୪।

୧. ସଂସାରର ସକଳଂକର, ପର ଅପର, ୨. ଆନନ୍ଦରେ, ସନ୍ତୋଷରେ, ୩. ଯଥାଶୀଘ୍ର, ଏକ୍ଷଣି, ୪. ସଂପଦ



ନଳିଣି ବନେ ଯେହ୍ନେ  ଉଦିତ ଦିନକର  ଅନ୍ଧ କି ଲୋଚନ ପାଇଲା
ନିବିଡ ଅନ୍ଧକାରେ  ଚନ୍ଦ୍ର କି ପ୍ରକାଶିଲା  ଦରିଦ୍ର ନିଧିକି ପାଇଲା
ଆହେ ରାଏ, ନାରାଏଣଙ୍କ କଥା ଶୁଣି
ନିଦ୍ରା ଯେହ୍ନେ, ଶପନ ଦେଖିଲେ ରକ୍ମଣି
ନେଇ କଲେ[୧] ବିପ୍ରକୁ  ନୟନେ ଦେଖି ବାଳୀ  ପ୍ରଳମ୍ବ[୨] କଲେ ସୁଲକ୍ଷଣୀ ।୦।

୧. ସ୍ୱାଗତ କରିନେବା ୨. ସାଷ୍ଟାଂଗ ପ୍ରଣିପାତ, ୩. ନିଶ୍ଚିତ କରି, ସତ୍ୟକରି, ୪. ସ୍ୱାଗତ କରିବା, ଧନ୍ୟବାଦ ଦେବା ୫. ମନସ୍ତାପରୁ ମୁକ୍ତ ହେବା, ୬. ନାରୀ ଶ୍ରେଷ୍ଠ

ନିଚଏ କହ ମୋତେ  କି ଆଗ୍ୟାଁ ଯିବି ପ୍ରତେ  ବିଜେ କରିଲେଟି କି ହରି
ନିଭ୍ରାନ୍ତି[୩] କହଇ ବିପ୍ର  ଶୁଣ ପଦ୍ମ ଲୋଚନି  ବଧାଇ[୪] ଦିଅ ବେଗେ କରି
ଆହେ ରାଏ, ନିସ୍ତରି[୫] ଉଠିଲେ ରକ୍ମଣୀ
ନିଧିକୋଟି, ମଣ୍ଡିଲେ ବ୍ରାହ୍ମଣକୁ ଆଣି
ନିରନ୍ତରେ ଉଛେବ  ସକଳ କାମେନିକଂ  ପୂଜା କରିବେ ଯୋଶାମଣି[୬] ।୦।
ନକର ବିଳମ୍ବ ଗୋ  ଅହିଖ୍ୟେଂ ବେଗେ ଚଳ  ନକର ହେଳା ଆଗୋ ମାଏ
ନାରାୟଣଙ୍କ ପାଦ  ପଦ୍ମମୁଖକୁ ଦେଖି  ସକଳ ପାପ କର କ୍ଷଏ
ଆଗୋ ମାଏ, ନଗ୍ରେଣ ପଶୁଛନ୍ତି ଧାଇଂ
ନାହିଂ ଭଏ, ଏକା ରଥେକଛନ୍ତି ବାହିଂ
ନୟନେ ଦେଖିଲି ମୁଁ  କୋଟି ଚନ୍ଦ୍ର ତା ରୂପ  ତୁମ୍ଭରେ ନିସ୍ତରିଲି ମୁଇଂ ।୧୫।



ଧାଇଁ କହନ୍ତି ଯାଇଁ ରାଜା ଡଗରାମାନେ ନୃପତି ଭାଇଙ୍କ ଛାମୁରେ[୧]
ଧୁରୁ[୨] ଦେଖିଲୁ ଆମ୍ଭେ ଏକା ରଥକେ ହରିଂ ବିଜୟେ କଲେ ତୁମ୍ଭ ପୁରେ
ଆହେ ରାଏ, ଧାଡିକାରେ[୩] ଉଠିଲେ ରାଏ
ଧାଇଁଯାଇ, କହିଲେ ନୃପତି ସଭାଏ
ଧିଲା[୪] ନାହିଁ ନିଉଂତା[୫] ଅକାରଣେ ଅଇଲେ ଦ୍ୱାରକାପତି ଦେବରାଏ ।୦।

ଧାରେ ହସି ବୋଲନ୍ତି ନୃପତି ଜାରାସଂଧ[୬] ପଳାଇଲା ଅଷ୍ଟାଦଶ ବାର[୭]
ଧାଇଁଛି ଏବେ ତାର ମୃତୁକୁ ଭଏ ନାହିଁ ଲାଜପାଇ ଯିବ ଏଠାର
ଆହେ ରାଏ, ଆଗ୍ୟାଁ ଯେ ଧିଲା ଜାରାସୁର[୮]
ଧାଇଁ ଆରେ, କଟେକ[୯] ବେଢ଼ ସତେ ପୁର
ଧର ମାର ନକର କି କରଇ ଚକ୍ରଧର ଜଗିଣ ଥାଅ ସର୍ବଠାର ।୧୬।

୧. ଛାମୁରେ, ୨. ଦୂରରୁ, ୩. ଶୀଘ୍ର, ୪. ବେଲା, ୫. ନିମନ୍ତ୍ରଣ, ୬. ଜରାସଂଧ, ୭. ଥର, ୮. ଜରାସଂଧ, ୯. ଗଡ଼, ରାଜଧାନୀ



ଦ – ୧୭

ଦେଖିଲେ ହରି ବଳରାମ ହିଁ ବିଜେ ସଂଗତେ[୧] ରାଜା ଉଗ୍ରସେନ
ଦିଶଇ ସିଂଧୁ ପ୍ରାଏ ରଥ ଗଜ ତୁରଂଗ[୨] ତାଳଧ୍ୱଜରେ ବିଜେ ରାମ
ଆହେ ରାଏ, ଦେଖି ନମନ୍ତି[୩] ଚକ୍ରଧର
ଦେଅନ୍ତି ସେ, ଉତର ପ୍ରଭୁ ହଳଧର
ଦେଖି ପଳାଇ ଯାକୁ ଏକା ଆସି ସେଠାକୁ ଲକ୍ଷେ ନୃପତି ଯା ସାଂଗର ।୦।

ଦ୍ରୁହସିତ[୪] ବଚନେ ବୋଲନ୍ତି ଜଗନାଥେ ଶୁଣିମା ରେବତୀରମଣ[୫]
ଦଣ୍ଡକେ[୬] କୋଟିକୋଟି ଜରାସଂଧ ପରାଏ ଆମ୍ଭକୁଂ ଦିଶଇ ତିରଣ[୭]
ଆହେ ରାଏ, ବୋଲନ୍ତି ପ୍ରଭୁ ଚକ୍ରଧର
ଆହେ ପ୍ରଭୁ, ବିଜେ କରିଥିବା ଏଠାର
ଦେଖଉଂ କିନା ଆମ୍ଭେ ଭାଇଙ୍କ ବିଭାଘର କେମନ୍ତ କରିଛି ସମ୍ଭାର[୮] ।୧୭।

୧. ସହିତରେ, ୨. ଘୋଡ଼ା, ୩. ନମସ୍କାର କରିବା, ୪. ଈଷତ୍ ହସ, ସ୍ମିତ ହସ, ୫. ବଳରାମ, ୬. ନିମିଷକରେ, ୭. ତୃଣ,ଘାସ, ୮. ଆୟୋଜନ,



ଥାଠରୁ[1] ଭାଇ ବଳ- ଦେବଙ୍କୁ ଆଗ୍ୟାଁ ମାଗି ଚଳିଲେ ଭୀଷ୍ମେଙ୍କର ପୁର
ଥାଠ ସକଳ ରାଜା ପତଙ୍ଗ[2] ପରା ଯାକୁ ବିଜଏ ଭୀଷ୍ମେଙ୍କ ନଗର
ଆହେ ରାଏ, ଥିରେ[3] ଦେଖନ୍ତି ନରନାରୀ
ଥାଠ ବେଢ଼ି, କଟେକଯାକ ଛନ୍ତି ପୁରି
ଥମ୍ବ[4] ପୁତଳି[5] କି ଏ ଚିତ୍ରପଟ ଲେଖନ କାହାର ନୟନ ନ ଚଳି ।ଠ।

ଥିଲା ଏକାକି ସଖି ଅପୂର୍ବ ପୁରୁଷ ଗୋ ଇନ୍ଦ୍ର କି ସ୍ୱର୍ଗରୁ ଅଇଲା
ଥିର କରିଣ ଦେଖ ଭଦ୍ରିକାପତି[6] ବିଷ୍ଣୁ ବୈକୁଣ୍ଠ ତେଜି ବିଜେକଲା
ଆଗୋ ସଖି, ଥାଉଁ ଭୀଷ୍ମେଙ୍କ ଏଡ଼େ ଅନ୍ଧ
ଆଖି ଥାଉଁ, ନ ଦେଖଇ ମେଦିନୀରଙ୍ଗ[7]
ଥିଲା ଏଡ଼େ ସୁନ୍ଦର ଭୀଷ୍ମେଙ୍କ ନ ବରିଲା ରୁକ୍ମିଣି କର୍ମ ଏଡ଼େ ମନ୍ଦ ।୧୮।

୧. ସୈନ୍ୟସାମନ୍ତ, ବଳ, ୨. ପକ୍ଷୀ, ଚଢ଼େଇ, ୩. ସ୍ଥିର, ନିଶ୍ଚଳ ଭାବରେ, ୪. ସ୍ତମ୍ଭ, ଖୁଣ୍ଟ, ୫. ପୁତ୍ତଳିକା, କଣ୍ଢେଇ, ୬. ବଦ୍ରିକାପତି, ୭. ସୌନ୍ଦର୍ଯ୍ୟ, ଶୋଭା,



ତ୍ରୈଲୋକ[1] ସୁନ୍ଦର ଏ ତ୍ରି ଜଗମୋହନ ଗୋ ଏ ବର ସେହି ନ ବରିଲା[2]
ତ୍ରିମୁଣ୍ଡି ଚୂଳମାଳ କୀରଟି ହାର ନାହିଁ ତୁଛାକୁ[3] ଜଗତ୍ର[4] ମୋହିଲା
ଆଗୋ ସଖି, ତଲେ କରନ୍ତି ପଦ୍ମତୋଳା
ତ୍ରୈଲୋକେ ଗୋ, ନାହିଁନା ଏ ଦ୍ରୀବ ପୁତଳା[5]
ତିଳେକ ବା *** ମଝା ହିଆକୁ ଗ*** ଦେଖି କାମେନୀ ମନ ଭୋଳା ।ଠ।

ତିନି ଜଗତ୍ରେ[6] ସଖୀ ଏମନ୍ତ ପୁରୁଷ ଗୋ ଆନେ ଅଛଇ ନ ଦେଖିଲା
ତପନ ମୂର୍ତ୍ତି[7] ଧରି ତିମିରିପତି[8] ଅବା ରୁକ୍ମିଣୀ ନେବାକୁ ଅଇଲା
ଆଗୋ ସଖି, ତଲେ[9] ଗୋ ଶ୍ରୀମୁଖକୁ କର
ତ୍ରୈଲୋକେ ଗୋ, କୋଟି ଇନ୍ଦ୍ର ଯା ଅବତାର
ତିରୀ ପୁରୁଷ ମୋହିତ ଧାତା ତା କରିଅଛି ରୁକ୍ମିଣୀ ଲମ୍ଭିବ ଏ ବର ।ଠ।
ତଲେ କରନ୍ତି ନର ନାରୀମାନେ ସକଳ ପତି ତନୟ ପାସୋରିଲେ
ତତ୍ୱବ୍ରହ୍ମ ସରୂପ କୋଟି ଇନ୍ଦ୍ର ସରୂପ ନୟନେ ଦେଖି ନିସ୍ତରିଲେ
ଆଗୋ ସଖି, ତିରୀ ଜନର ତପଫଳ
ତିଲୋଚନ,[10] ସେବି ପାଇବ ଏହୁ ବର
ତପି ଯୁବତୀ ଯେହୁ କୋଳେ ଧରିବ ସେହୁ ଦେବେ ମାନବେ ଅଗୋଚର ।୧୯।

୧. ତିନିଲୋକ-ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ୨. ଏହି ବରକୁ ମଧ ବରଣ କଲା ନାହିଁ,
୩. ଖାଲିରେ, ବିନା ବେଶଭୂଷାରେ, ୪. ଜଗତ, ସଂସାର, ୫. ଦିବ୍ୟ, ସ୍ୱର୍ଗୀୟ ମୂର୍ତ୍ତି,
୬. ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ, ୭. ମୂର୍ତ୍ତି, ରୂପ, ୮. ଚନ୍ଦ୍ର, ୯. ନିଘା କରିବା, ନିଠେଇ ଦେଖିବା,
୧୦. ତ୍ରିଲୋଚନ, ଶିବ



ଅଣନିଚଳ[୧] ଦେଖି    ସମସ୍ତ ସଇନ ବଳ    ସଭାରେ ତେସନ ନିଶ୍ଚଳ
ଅଣଅନ୍ତର[୨] ପଟେ    ଯେସନ ନଟବର    ଭେଳକି[୩] ଲାଗିଲା ସକଳ
ଆଗୋ ସଖି, ଅଣ ଅସଂଖ୍ୟ[୪] ସୈନ୍ୟବଳ
ଅଣିକରି[୫],  ବର ବରିଛି ଶିଶୁପାଳ
ଅଣ ଅମୃତି ସମୋଦ୍ରେ    ମାହାମେର ଯେସନ    ଶୋଭାପାଉଛି ବୀରବର ।୦।

ଅଣଖେ[୬] ଜାରା ଆଗେ    କହୁଅଛି ଭୀଷ୍ମକ    ତୁମ୍ଭେତ ବିଜେ କରିଅଛ
ଅଣନିଉନ୍ତା[୭] ଯେବେ    ଗୋବିନ୍ଦ ତ ଅଇଲେ    କେମନ୍ତେ ମଣିଲେ ପ୍ରତକ୍ଷ
ଆହେ ରାଏ, ଆନନ୍ଦ ହୃଦରେ ଭୀଷ୍ମକ
ଅଣିକରି, ରକ୍ମଣି ପାଇଲାକ ଟେକ[୮]
ଅଣଖେ ଯାଇ ରାଏ    ଭେଟିଲେ ଜଗନାଥ    ରୂପେଣ ମୋହୁଛି ତ୍ରୈଲୋକ୍ୟ ।୨୦।

୧.ଅନିଶ୍ଚଳ, ଗତିଶୀଳ, ୨. ଭିତରେ, ୩. କିମିଆ, ୪. ଅସଂଖ୍ୟ, ୫. ଅଣିକରି, ଅଡ଼ିକରି, ଜିଦ୍‌କରି, ୬. ଅସହାୟ, ୭. ନିମନ୍ତ୍ରଣ ବିନା, ୮. ମହତ୍ତ୍ୱ, ଶ୍ରୀକୃଷ୍ଣଙ୍କୁ ପତି ରୂପେ ପାଇବାର ଗୌରବ



ଡାଳେ[୧] ହେ ଏକା ରଥେ    କେତେ କାର୍ଯ୍ୟେଣ ଏଥେ    ଦେଖିଲି ଜନି[୨] ମୋ ସୁଫଳ
ଡମ[୩] କହନ୍ତି ହରି    ମୃଗୟା ଆସିଥିଲୁ    ଶୁଣିଲୁ ତୁମ୍ଭ ବିଭାଘର
ଆହେ ରାଏ,  ଡମ ଯେ କହନ୍ତି ଅନନ୍ତ
ଡମ ନୋହଇ,  ତୁମ୍ଭ ଆମର ବଧୁଁ ମତ[୪]
ଢୋକିଲା[୫] ଅମୃତ ପ୍ରାୟେ    ବିନୋଇ[୬] ହୋଇ ରାଏ    କୃଷ୍ଣକୁ ହୋଇ କୃତକୃତ ।୦।

ଡମକରି ନ ପୁଣ    ବିଜେ କରିଣ ଯାଅ    ଏ କାର୍ଯ୍ୟ ସକଳ ତୁମ୍ଭର
ଡାଳେ ଭୀଷ୍ମକ ରାଏ    ମନ୍ତ୍ରୀକି ଆଜ୍ଞା ଦେଲା    ମଣୋହି ସଞ୍ଚା ବେଗେ କର
ଆହେ ରାଏ,  ଡାଳେ କୃଷ୍ଣକୁ ସମ୍ବର୍ଦିଣ[୭] ରାଏ
ଡଳିଯାଇ,  କହନ୍ତି ନୃପତି ସଭାଏ
ଢୋଲ ଦବଲୁ ଭେରୀ    ମହୁରି ବିଜିଘୋଷ    ଚହଳ ସିନ୍ଧୁଘୋଷ ପ୍ରାଏ ।୨୧।

୧. ଅବଲୀଳାକ୍ରମେ , ୨. ଜନ୍ମ, ୩. ଚାତୁରୀ, ଛଳନା, ୪. ପରି, ୫.ଆତ୍ମସ୍ଥ କରିବା, ପେଟକୁ ନବା, ୬. ନମ୍ର ଭାବ, ୭. ସମ୍ବର୍ଦ୍ଧନା କରି



ଡାକିଣ ଜରା ଆଜ୍ଞା ଦେଉଛି ରକ୍ମଣଙ୍କୁ ଉଛୁର ହୋଉଅଛି ବେଳ
ଡାକ ପ୍ରୋହିତ[୧] ବଡ- ପଣ୍ଡା ରାଏଗୁରୁ[୨]ଙ୍କୁ ଯାଇ ଲଗନେ ବିଭାକର
ଆହେ ରାଏ, ଡାକ ଯେ ମୁଦୁସୁଲିମାନ
ଡାକ ବେଗେ, କନ୍ୟାକୁ ସଜ କରି ଆଣ
ଡୋଳେ[୩] ଅନାଉଛନ୍ତି ସମସ୍ତ ରାଜାମାନେ ଶୁଭେଣ ହଉଛି ବରଣ ।ଠ।

ଡାକିଣ ମୁଦୁସୁଲି ଜଣାନ୍ତି ଭୀସ୍ମେକକୁ ଅହିକ୍ଷେ[୪] ଯିବେ ଯେ ରକ୍ମଣୀ
ଡୋହଳ ମାଳ[୫] ନୈବେଦ ଚନ୍ଦନ ବୋଦା[୬] ଦେଇ ପୂଜିବେ ଯାଇ ଘୋଷାମଣୀ[୭]
ଆହେ ରାଏ, ଡାକି ବୋଲଇ ଢାରାସୁର
ଡାକେ ଆରେ, କନ୍ୟାକୁ ବେଢ଼ ସଚେପୁର
ଡର ନାହିଁ ତାହାର ଅଶେଷ ବଳିଆର କଇନ୍ୟାକୁ ନେଅଇଟି ଚୋର ।୨୨।

୧. ପୁରୋହିତ, ୨. ରାଜଗୁରୁ, ୩. ଆଖିରେ, ୪. ଏହିକ୍ଷଣି, ୫.ଫୁଲମାଳ, ୬. ବିନ୍ଦୁ, ୭. ଗୋସାମଣୀ, ସାଆନ୍ତାଣୀ



ଠାକୁରାଣୀଙ୍କ ପୂଜା ଘେନି ଭୀସ୍ମେକ ଜେମା ରତ୍ନ ହାନ୍ଦୋଳାଏ ବିଜେ କଲେ
ଠଣ[୧] କ୍ଷତ୍ର ଚାମର ବାଜେ ମହୁରୀ ଭେରୀ ଟମକେ କୃମ ଉଷୁଳିଲେ[୨]
ଆହେ ରାଏ, ଠାବେ[୩] ରହିଛି ନନ୍ଦିଘୋଷ
ଠାବେ ଠାବେ[୪], ବଳ ବେଢ଼ିଛି ଚଉପାଶ
ଠିକେଣ ସିରୀମାନେ ମଙ୍ଗଳ ହୁଳହୁଳି ଗୋଷାଣୀ[୫] ଦେଉଳେ ପ୍ରବେଶ ।ଠ।

ଠାକୁରାଣୀଙ୍କ ମାଜଣା[୬] ମାଳ ଚନ୍ଦନ ଦେଇ ଠିକେଣ ପ୍ରଣପଟ୍ୟ[୭] କରି
ଠିକେ ପ୍ରଜମ୍ ହୋଇ ବୋଲନ୍ତି କମଳିନୀ ***********
ଆଗୋ ମାଏ, ************ ଘୋଷାମଣି
ଠିକେ ମାଗୋ, ଗୋବିନ୍ଦ ଇମ୍ବ[୮] ଏହିକ୍ଷଣି
ଠିକ ପ୍ରସନ ପାଇ ଦେଉଳୁ ବାହାରନ୍ତେ ଦ୍ୱାରେ ଭେଟିଲେ ଚକ୍ରପାଣି ।୨୩।

୧. ସୁନ୍ଦର, ୨. କୂର୍ମ ଉଛୁଳିଲେ, ଧରଣୀ କଂପି ଉଠିଲା, ୩. ଏକସ୍ଥାନରେ, ୪. ସ୍ଥାନେ ସ୍ଥାନେ, ୫. ଏଠାରେ ରକ୍ମଣୀ, ୬. ସ୍ନାନ, ୭. ନମସ୍କାର, ପ୍ରଣିପାତ, ୮. ଲାଭକର, ପାଅ



ଟାକି[୧] ସରୋଜ ଦିନ- ମଣିକୁ ପାଇଲାଇ କୁମୁଦ ପାଇଲାଇ ଶଶି
ଟେକି[୨] ଚାତେକ[୩] ମୁଖେ ଜଳ କି ବରଷଇ ତେସନେ ହେଲେ ହୃଷୀ (ଶୁଭ୍ର)କେଶୀ
ଆହେ ରାଏ, ଟେକି ଅନାଇ ଶିର ପୋତିଂ
ଟେକି ପଦ୍ମ, -ଲୋଚନେ ଚାହାଂତି ଶ୍ରୀପତି
ଟେକି ମାନିନୀ କୃଷ୍ଣ ପାଦରେ ଦେଇ ମତି ଯେସନେ ମତଗଜ ଗତି ।୦।

ଟାକି[୪] କେଶରୀ ଯେହ୍ନେ ଝାମ୍ପି[୫] ହରିଣୀ ନିଏ ରକ୍ମଣି ଘେନି ବିଜେ ରଥ
ଟେକି ଅନାଉକ୍ଷନ୍ତି[୬] ଉଡ଼ିଲା ନନ୍ଦିଘୋଷ ବାହୁଡ଼ା[୭] ବିଜେ ଜଗନାଥ
ଆହେ ରାଏ, ଟେକି ଡାକନ୍ତି ସନ୍ୟବଳ
ଆରେ ଆରେ, କନ୍ୟାକୁ ନେଉଂଅଛି ଚୋର
ଟାଣେ[୮] ଚାହଂତି ଆରେ କେ ନେଲା ଧର ଧର ଶୁଭିଲା ଗହଳ ଗଧୋଳ ।୨୪।

୧. ଅପେକ୍ଷା କରି, ୨ ଉପରକୁ, ୩. ଚାତକ, ୪. ଢଗି ବସିଥିବା, ସୁଯୋଗ ଉଣ୍ଡୁଥିବା, ୪. ଫୁଟାଣି, ଅହଂ ଭାବ, ୫. ବଳ ପ୍ରୟୋଗକରି ଟାଣିନେବା, ୬. ଚାହିଁ ରହିବା, ୭. ଫେରନ୍ତା, ୮. ରାଗରେ



ନେଲାରେ ନେଲା ନେଲା ଗଲାରେ ଗଲା ଗଲା ଧାମନ୍ତି ହୟ[୧] ଗଜ ବଳ[୨]
ନିର୍ଝର[୩] ଯଥା ସିନ୍ଧୁ ପ୍ରାଏକ ଘୋଟିଲା ପୂରିଲା ଚଉଦିଗେ ଗୋଳ
ଆହେ ରାଏ, ନିଶଙ୍କେ ବିଜେ ରଥେ ହରି
ନିରନ୍ତରେ, ଲକ୍ଷ୍ମୀକିଂ କୋଡ଼େଛନ୍ତି ଧରିଂ
ନ୍ରିଜାଣ[୪] ଥାଠ ସଇନ ରେଣୁ ପ୍ରାୟେ ଯାହାକୁ ରେକାରେ[୫] କମ୍ପଇ ବସୁନ୍ଧରାଂ ।୦।

ନୀଳାମ୍ବରେ[୬] ଦେଖନ୍ତି ଆସନ୍ତି ଦେବହରିଂ ଅଶେଷ ବଳଛନ୍ତି ବାହିଂ
ନୀଳକ୍ଷ[୭] ପଲ ଦେଖି ମହାବଳ ଯେସନେ ଧାମନ୍ତିଂ ରେବତୀଙ୍କ ସାଇଂ
ଆହେ ରାଏ, ନିର୍ଧୁମ[୮] ଅଗ୍ନି ଯଦୁବୀରେ
ନିକ୍ଷତ୍ର[୯] କରି, ମାଇଲେ ସଇନ ସକଳେ
ନିସତ[୧୦] ହୋଇ ଯାଇଂ ସମସ୍ତ ସନ୍ୟମାନେ କହନ୍ତି ଜାରାର କ୍ଷାମୁରେ ।୨୫।

୧. ଘୋଡ଼ା, ୨. ସୈନ୍ୟସାମନ୍ତ, ୩. ଝରଣା, ୪. ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ, ୫. ଆକ୍ରମଣାତ୍ମକ ଚିତ୍କାର, ୬. ବଳରାମ, ୭. ମୃଗ ପଲ, ୮. ନିର୍ଧୂମ, ଧୂଆଁ ନଥିବା, ୯. ବଳହୀନ, ନିଛତ୍ର, ନିରସ୍ତ୍ର
୧୦. ବଳହୀନ, ଅସହାୟ



ଝାଡିକାରେଣ[୧] ଜାରା    ଲକ୍ଷେ ନୃପତି ତୁଳେ    ଧାଇଂଲା ସମଦଣ୍ଡ[୨] ଘେନିଂ
ଝାମ୍ପି କେଶରୀ ଯେହ୍ନେ    ଗଜ ଯୂଥ[୩] ଦେଖିଣ    ଅଗ୍ରସରିଲେ[୪] ହଳପାଣି
ଆହେ ରାଏ, ଝାମ୍ପି ପିଟିଲେ ହଳଧର
ଝଣଝାଣ, ବାଜିଲା ସମର ଧେଁଧଳ[୫]
****** ଯେହ୍ନେ    ବତାସେ ରେଣୁ ପ୍ରାୟେ    ଉଡ଼ିଲେ ନୃପତି ସକଳ ।୦।

ଝମକି[୬] ଗଦା ଘେନି    ଧାମଇଂ ଜାରାସୁର    ଆରେ ଗଉଡ଼େ ଏଡ଼େ ମଦଂ
ଝମଟେ[୭] ନ ରହ ଯେ    ପଳାଅ ମୋର ଡରେ    ଆଜ ସାରିବା ସବୁ ଦନ୍ଦ[୮]
ଆହେ ରାଏ, ଝଳକ[୯] ବଚନ ଯେ ଶୁଣି
ଝାମ୍ପି ହଳି, ମୂଷଳ ପିଟିଲେକ ଆଣି
ଝଡ଼ିଲା[୧୦] ରଥ ଦେଖି    ପଳାଇ ଜାରାସୁର    କେଶ ଧଇଲେ ହଳପାଣି ।୨୬।

୧. ତତ୍କ୍ଷଣାତ୍, ୨. ସୈନ୍ୟବଳ, ୩. ଦଳ, ୪.ଆଗୁସାର ହେବା, ୫. ବାଦ୍ୟ, ୬.ଝମକିବା, ୭. କ୍ଷଣକେ, ୮. ଦ୍ୱନ୍ଦ୍ୱ, କଳହ,
୯. ଉତ୍ତେଜନାପୂର୍ଣ୍ଣ, ଝିଗାଁସ, ଅପମାନଜନକ, ୧୦. ତଳକୁ ଖସିପଡ଼ିବା



ଯାହାର କୋଟି କୋଟି    ସିଂଘର ପରାକ୍ରମ    ଜାରାକୁ ପିଟନ୍ତେ ମୂଷଳ
ଜୟ ଶବଦ କରି    ବୋଲନ୍ତି ସୁରଗଣେ    ବାରେକ[୧] ରଖ କାମପାଳ
ଆହେ ରାଏ, ଜାରା ଯେ ଭଏ ପଳାଇଲା
ଯେତେ ରାଜା, କ୍ଷାମୁରେ କେହି ନ ରହିଲା
ଜାରାର ଅପମାନ    ଶୁଣି ରକ୍ମଣ ବଳ    କୃଷ୍ଣ ଉପରକୁ ବାହିଲା[୨] ।୦।

ଯା ଦେବଂ ବଳ ଘେନି    ନନ୍ଦିଘୋଷରେ ହରି    ତାଳଧ୍ୱଜରେ ରାମ ବିଜେ
****************************************************** ।୨୭।

୧. ଥରକ, ୨. ଆକ୍ରମଣ କରିବା



ଚାରି ଯୁଗକୁ କଥା    ରୁହାଇ ଜଗନାଥେ    ଲକ୍ଷେ ନୃପତି ରଣେ ଜିଣି
ଚତୃଦଶ[୧] ଭୁବନେ    ଜୟେ ଶବଦ ଶୁଭେ    ବିଜଏ ରକ୍ମଣୀଙ୍କୁ ଘେନି
ଆହେ ରାଏ, ଚନ୍ଦ୍ରବଦନୀ ଛନ୍ତି[୨] କୋଳେ
ଚନ୍ଦ୍ର ଯେହ୍ନେ, ଉଦଏ ଏ ନୀଳ ମୋଣ୍ଡୋଳେ[୩]
ଚାଚେରୀ ଖେଡ଼[୪] ପ୍ରାଏ    ବିଜଏ ଦୁଇ ଭାଇ    ହରି ଶବଦ କୁତୋହଳେ ।୦।

ଚମକ ପଡ଼ିଲାକ    ଚତୃଦଶ ଭୁବନେ    ସପତ ଦ୍ୱୀପ ଏ ପାତାଳ
ଚିତ୍ର[୫] ଦେଖନ୍ତି ସୁର    ଅସୁର ନର ନାର୍ରୀ    ବ୍ୟାପୁ ମହିମା ଚକ୍ରଧରଂ
ଆହେ ରାଏ, ଆଗେ ବିଜୟ ବଳରାମ
ଚନ୍ଦ୍ରକୋଟି, କାନ୍ତି ନୋହୋଇ ରୂପ ସମ
ଆଗେଣ ତାଳଧ୍ୱଜ    ପଛେଣ ନନ୍ଦିଘୋଷ    ସଇନ ଅତି ଅନୁପାମ[୬] ।୨୯।

୧. ଚତୁର୍ଦଶ, ଚଉଦ, ୨. ଅଛନ୍ତି, ୩. ମଣ୍ଡଳରେ, ୪. ଚର୍ଚରୀ ଖେଳ, ୫.ଦୃଶ୍ୟ, ୬.ଅକଳଣ



ନିବିଡ଼ ନିସାଣ[୧] ଯେ    କୋଟି ଟମକ ଭେର୍ରୀ    ଢୋଲ ଦବଲୁ କୁତୋହଳି[୨]
ନିରନ୍ତରେଣ[୩] ଶଙ୍ଖ    ଛତ୍ର ଚାମର ମହୁରିଂ    ହରି ଶବଦେ କୁତୋହଳି
ଆହେ ରାଏ, ନିର୍ଭଏ ଦ୍ୱାରେକା ପ୍ରବେଶ
ନାରୀମାନେ, ଅର୍ଘ[୪] ବନ୍ଦାନ୍ତି ହୃଷୀକେଶ
ନୟନେ ଦେଖୁଛନ୍ତି    ଦ୍ୱାରକା ନରନାରୀ    କୃଷ୍ଣ ରକ୍ମଣୀ ନନ୍ଦିଘୋଷ ।୦

ନାହିଂ ଦେଖିଲା ସଖୀ    ଏ ମହି ମୋଣ୍ଡୋଳେ ଗୋ    ଏମନ୍ତ ଯୁବତୀ ଉପାମା
ନିର୍ବାଣ[୫] କଲା ଧାତା    କେତେକ କାଳ ବସି    ମୁଖତା କୋଟିଏ ଚନ୍ଦ୍ରମା
ଆଗୋ ସଖି, ନ୍ରିମଳ[୬] ସରୋଜ ନୟନିଂ
ନିରନ୍ତରେ, ପ୍ରସନେ ଚାହାଇଂ ମେଦିନୀ
ନୀଳା ଖମ୍ବରେ[୭] ଯେହ୍ନେ ହେମ[୮] ପ୍ରତିମା କାନ୍ତି    ତେସନ ଶୋଭା[୯] ଯେ ରକ୍ମଣୀ ।୩୦

୧. କାଠବାଜା, ଏକ ମୁହାଁ ବଡ଼ କାଠ ଖୋଳରେ ଚମଡ଼ା ଛାଉଣି ବାଦ୍ୟ ଯନ୍ତ୍ର, ୨. କଳାତ୍ମକ ଭାବରେ, ୩. ଅବିରତ, ୪. ଅର୍ଘ୍ୟ, ପାଣି, ୫. ନିର୍ମାଣ, ତିଆରି କରିବା, ଗଢ଼ିବା,
୬. ନିର୍ମଳ, ସଜ, ୭. ସ୍ତମ୍ଭ, ଖୁଣ୍ଟ. ୮. ସୁନା, ୯. ଶୋଭା, ସୌନ୍ଦର୍ଯ୍ୟ, ରୂପ



ଖଞ୍ଜିଂଲେ ହେମମଣି        ମଣ୍ଡିଲେ[୧] ପୁରେ ପୁର        ମୁକୁତା ତୋରଣା[୨] ଲମ୍ବାଇଂ
ଖଞ୍ଜିଂଲେ ସୁବର୍ଣ୍ଣ        କଳସ ନେତ ପାତାଗ[୩]        ସବୁ ମନ୍ଦିର ଶୋଭା ପାଇଂ
ଆହେ ରାଏ, ଖଣକେ[୪] ଆସି ବିଶକ୍ରମା[୫]
ଖଂଜିଲା ସେ, କ୍ଷାମ୍ୟା ମୋଣ୍ଡେପ[୬] ଅନୂପମା
ଖଂଜିଲେ ହେମ ମଣି-        ରତ୍ନ ଜଡ଼ିତ ବେଦି        ଯହିଂ ବିଜୟେ କୃଷ୍ଣ ବାମା[୭] ।୦।

ଖିଳ ବ୍ରହ୍ମାଣ୍ଡ କୋଟି        ଠାକୁର ବିଭା ଯହିଂ        ଅଶେଷ ଦେବ ବରଯାତି
ଖଟିଲେ[୮] ଚନ୍ଦ୍ର ସୂର୍ଯ୍ୟେ        ଗ୍ରହଗଣ ଯେ ବିଭା        ଲଗ୍ନ ଧଇଲେ ବୃହସ୍ପତି
ଆହେ ରାଏ, ଖଣକେ[୯] ସରିଲା ବରଣ
ଖଟିଲା ସେ, ଭୀଷ୍ମେଂକ ଦୁହିତା ଦେଇଣ

************************************ ।୩୩।

୧. ସୁସଜ୍ଜିତ କଲେ, ୨. ଝାଲେରୀ, ୩. ପତାକା, ୪. ସଂଗେ ସଂଗେ, ୫. ବିଶ୍ୱକର୍ମା, ୬. ବିବାହ ବେଦୀ, ୭. ପତ୍ନୀ, ୮. ସେବାକଲେ, ୯. ଯଥାଶୀଘ୍ର





# ଆର୍ତ୍ତତ୍ରାଣ ଚଉତିଶା

ଦୀନକୃଷ୍ଣ ଦାସ





ଶ୍ରୀ ଗଣସାଏ[1] ନମଃ

କୃପାସିନ୍ଧୁ ବଦନ    କରି ଅବଲୋକନ    କେଉଂ କରମହୀନ ଜନ
କାକୁସ୍ଥଭର[2] ହୋଇ    କରଯୋଡ଼ି ଜଣାଇଂ    ଗରୁଡ ସ୍ତମ୍ଭ ସନିଧାନ, ହେ ମହାପ୍ରଭୁ
କୃପାସରିତପତି ହୋଇ
କର୍ମହୀନ ଜନ ହିଂ ମୁହିଂ
କରଣା କର ନାହିଂ    କିମ୍ପା ହେ ଭାଗଗ୍ରାହୀ    କହ ମୁ ବିଚିତ୍ର[3] ମଣଇଂ[4] ହେ ।୧।

କଶ୍ଚିଦ୍ଦୁଃଖୀ କୃପାମ୍ଭୋନିଧି ବଦନ ବିଧୁଂ ବୀକ୍ଷ୍ୟ ତାର୍କ୍ଷସ୍ୟ ପାର୍ଶ୍ୱେ
ହସ୍ତୌ ବଦ୍ଧ୍ୱୋତ୍ତମାଙ୍ଗେଽତିଶୟକୃଶତୟା ବାକ୍ୟମୁଚେ ସଶୋକମ୍ ।
କୃତ୍ୱା ଦୀନାର୍ତ୍ତିନାଶବ୍ରତମପି କରଣାମ୍ଭୋନିଧେ କର୍ମ ହୀନେ
ଲୋକେ କସ୍ମାତ୍ କୃପାଂ ତ୍ୱଂ କଥୟ ନ କୁରୁଷେ ଚିତ୍ରବନ୍ମନ୍ୟତେଽୟମ୍ ।୧।

କଶ୍ଚିତ୍କର୍ମହତଃ କୃପାନିଧିମୁଖଂ ଦୃଷ୍ଟ୍ୱାତିଦୁଃଖାର୍ଦିତ-
ସ୍ତାର୍କ୍ଷସ୍ତମ୍ଭ ସମାଗତୋ ଯୁତକରଃ ଦ୍ୱନ୍ଦ୍ୱଂସମାଖ୍ୟାପୟତ୍
ଭୂତ୍ୱାଦେବକୃପାସରିତ୍ପତିରହୋ କିଂ କର୍ମହୀନେଜନେ
ନୋକୁର୍ଯାଃ କରୁଣାଂ ହି ଭାବୁକବିଭୋ ମନ୍ୟେ ବିଚିତ୍ରଂ ତ୍ୱିଦମ୍ ।୧।

ପାଠାନ୍ତର : ୧. ଗଣେସାୟ ୨. ପାଠାନ୍ତର : କାକୁସ୍ତତର ୩. ଆଶ୍ଚର୍ଯ୍ୟ ୪. ପାଠାନ୍ତର : ମଣୋହି



ଖ୍ଯିଳ ବ୍ରହ୍ମାଣ୍ଡୋଦରେ[୧] କର୍ମହୀନ ଜନରେ ଯେଣୁ ମୋ ସମ ଆନ ନାହିଁ
ଖଗ-ତିଳକ-କାନ୍ତ[୨] କି କାରଣେ ଏମନ୍ତ ଖେଦ ଆଉତେ କହିଲଇଂ[୩], ହେ ମହାପ୍ରଭୁ
ଖଣ୍ଡିଲ ନାହିଁ ଯେଣୁ ମୋର
ଖେଦ କରୁଣା- ରତ୍ନାକର
ଖିଳ ବ୍ରହ୍ମାଣ୍ଡଧର[୪] ଖଣ୍ଡି ନାହଂ କାହାର କେଉଂ ବିପଦ ବିଶ୍ୱମ୍ଭର ହେ ।୨।

खण्डापद्भोगिदंष्ट्रावलिदलिततनु र्मादृश: कर्महीन:
कंसाराते जगत्यां न हि बसति यत: खेदतो ज्ञापयामि
केषां नाखण्डिं तुर्ण्ण कति दरदितितिं र्हीनबन्धो त्वयारं
कस्मान्मद्रक्षणार्थं वद मदनगुरो चानुकम्पां जहासि ।२।

खेदादींश्च अवादिशंयदखिलं वृह्माण्डभाण्डोदरे
पक्षीन्द्रध्वज नष्टकर्मसुमया तुल्यो नकश्चित्पर:
नध्वस्तो यदीह प्रभो मम महाखेद: कृपावारिधे
बृह्माण्डाधिप खण्डितानवियदापत्कस्य विश्वम्भर ।२।

୧. ପାଠାନ୍ତର : ଖ୍ଯିଳ ବ୍ରହ୍ମାଣ୍ଡ କରେ, ସମଗ୍ର ବ୍ରହ୍ମାଣ୍ଡ ଯାହାର ଗର୍ଭରେ ୨. ଗରୁଡ଼ର ପ୍ରଭୁ ଯେ ବିଷ୍ଣୁ ୩. ପାଠାନ୍ତର : ମଣିଲଇଂ ୪. ବ୍ରହ୍ମାଣ୍ଡକୁ ଯେ ଧାରଣ କରିଛି



ଗଜରାଜକୁ ଜଳେ　　ଗ୍ରାହା ଗ୍ରାସିଲା କାଳେ　　ଡାକିଲା ରଖ ଆଦିମୂଳ
ଗରତର ଆତଙ୍କ　　ଜାଣି ତାର ଶ୍ରୀରଙ୍ଗ　　ରଥାଙ୍ଗ[୧] ପେସିଲ ତତ୍କାଳ, ହେ ମହାପ୍ରଭୁ
ଗ୍ରାହା[୨] ଜୀବନେ ନିବାରିଲ
ଗଜ ବିପତିରୁ ତାରିଲ
ଗରତ୍ମାନ-କେତନ[୩]　　ମୋହ କର୍ମକୁ ହୀନ　　ନିରାଶ ନିରବଧି[୪] ହେଲ ହେ ।୩।

ଗ୍ରାହେନ୍ଦ୍ର ଗ୍ରସ୍ତ ନାଗୋଽଶରଣଜନ ପରିତ୍ରାଣ ପାହୀତି ଯସ୍ମିନ୍
କାଳେଽବୋଚତ୍ତଦା ତ୍ୱଂ ସପଦି ଗଜ ବରଂ ନକ୍ର ବକ୍ତ୍ରାଦପାସୀଃ ।
ଇତ୍ଥଂ ତେ ଦୀନବନ୍ଧୋ ଜଗତି ବିଜୟତେ ତାପହୃଦ୍ ବୈଜୟନ୍ତୀ
ତାବନ୍ମତ୍ କର୍ମ ଯୋଗାତ୍ କଥୟ କଥମହୋ ନିର୍ଦ୍ଦୟ ସ୍ତ୍ୱଂ ଗତୋଽସି ।୩।

ଗୃହ୍ଣାତିସ୍ମଜଳେ ଯଦା କରିବରଂ ଗ୍ରାହସ୍ତଦାର୍ନଂଗଜୋ
ବ୍ୟାଜହ୍ରେନ ଜନାର୍ଦ୍ଦନେତି ମହତାଂ ଋାତ୍ୱାତଦାୟାପଦଂ
ଶ୍ରୀଶଃ ପ୍ରେଷିତବାନରିଲଘୁହତୋ ନକ୍ରସ୍ୟବୋଦ୍ଧାରିତୋ
ମତ୍କର୍ମାନୁ ସୁପର୍ଣ୍ଣକେତନ ପୁନର୍ଜାତୋ ନିରାଶାମ୍ବୁଧିଃ ।୩।

୧. ଚକ୍ର ୨. କୁମ୍ଭୀର ୩. ଗରୁଡ଼ଧ୍ୱଜ, ବିଷ୍ଣୁ ୪. ସର୍ବଦା





ଘନଶ୍ୟାମ ହେ ଘନ    ବିପଦ ବିନାଶନ    ବିଚାରଥାଇ ମନେ ମୋର
ଘୋର ବିପତି ଛାର    କେତେ ମାତ୍ର ଯାହାର    ପ୍ରଭୁ ମହିମା ଅକୂପାର[୧], ହେ ମହାପ୍ରଭୁ
ଘନେ ଯେ କ (ଥା) ମନେ ଥିଲା
ଘୃଣା କି କାରଣେ ନୋହିଲା
ଘୋର ବିପତି ମୋର    ହୋଇ ଘଟକୁମର[୨]    ମହିମା ବାରଧି ଶୋଷିଲା ।୪।

ଘୋରା କେୟଂ ବିପତ୍ତିଃ କଳିତ ଗୁରୁ ତନୁର୍ମାନସେ ମେ ସଦୈତ-
ନ୍ନିଷ୍ଟା ଭୋ ବୈନତେୟ ଧ୍ୱଜ ତବ କରୁଣାମ୍ଭୋନିଧେ ନାସ୍ତି ପାରଃ ।
ଷ୍ଟାତ୍ୱୈବଂ ମଦ୍‌ବିପାକୋତ୍‌କଟ ଘଟତନୁଜଃ ପୀତବାନ୍ ତ୍ୱତ୍ କୃପାମ୍ଭୋ-
ରାଶିଂ କିଂବା ବିଧାସ୍ୟେ କଥୟ ନବଘନଶ୍ୟାମ ଭୋଃ କାମମୂର୍ତ୍ତେ ? ।୪।

ଘୋରାପତ୍ତିହର ପ୍ରଭୋ ଘନରୁଚେ ଚିତ୍ତେ ମୟାଚିନ୍ତିତଂ
ଯୋ ଦେବୋ ମହିମାମ୍ବୁଧି ଖଲୁ କିୟନ୍ମାତ୍ରଂ ହି ତତ୍ରାପଦଂ
ଇତ୍ଥଂ ମେ ହୃଦୟେସ୍ଥିତଂ ନନୁ ବୃତୋ ନସ୍ୟାଦଦ୍ୟାତେଽଥବା
ମଦ୍ଦୁର୍ଦୈବଘଟୋ ହବେନ ମହିମାମ୍ଭୋଧିସ୍ତଦା ଶୋଷିତମ୍ ।

୧.ପାଠାନ୍ତର : ଅପାର ସମୁଦ୍ର ୨. ଅଗସ୍ତ୍ୟ ଋଷି







ନିରେଖ[୧] ନିସ୍ତାରଣ[୨] କାରଣେ ପ୍ରହରଣ କର କମଳରେ ବହିଛ
ନିଧନ ସମୟରେ କିମ୍ପା ମୋ ବିଷୟରେ ନିର୍ଦ୍ଦୟ ହୃଦୟ ହେଉଛ, ହେ ମହାପ୍ରଭୁ
ନୀଳାଚଳରେ ତୁମ୍ଭେ ଥିବ
ନିଶ୍ଚେ ନିରେଖ ନାଶଯିବ
ନିଖିଳ-ନିକେତନ ନବପଞ୍ଚ ଭୁବନ[୩] ମଧ୍ୟେ ଏ କେମନ୍ତ ଦିଶିବ ହେ ।୫।

ନୀଳାଦ୍ରୌ ସଂସ୍ଥିତେ ତ୍ୱୟ୍ୟନୁଦିନମସକୃ ଦ୍ଦୁଃଖରାଶୌ ନିମଗ୍ନୋ-
ଭୂତ୍ୱା ଯନ୍ନାଶମାଗାତ୍ତବ ପଦ କମଳୈକାଶ୍ରୟଃ କୋଽପି ଲୋକଃ ।
ଚକ୍ରେଣାଙ୍ଗ ମୁରାରେ ତବ କର କମଳ ସ୍ଥେନ ଦୀନାର୍ତ୍ତରକ୍ଷା-
କର୍ତ୍ତୁଂ କିଂ ନୋ ବଦେୟୁର୍ମମ ଦୁରିତମିଦଂ ଚିନ୍ତ୍ୟତାଂ ତନ୍ମହାତ୍ମନ୍ ।୫।

ନ୍ୟୂନଂ ରକ୍ଷଣକାରଣା ପ୍ରହରଣଂ ଧତ୍ତେକରାମ୍ଭୋରୁହେ
ରକ୍ଷାଣାମମରେଶ ମୃତ୍ୟୁ ସମୟେ କିଂ ମେ ଭବେଂନ୍ନିଷ୍ଠୁରଃ
ଆସୀନେ ତ୍ୱୟି ନୀଳଶୈଳଶିଖରେ ନଶ୍ୟେନ୍ନିର କ୍ଷୋନନ୍ତୁ
ଶ୍ରୂୟେତେତିକଥଂ କଥାଖିଳପୁରୋଦ୍ୱିଃସପ୍ତଲୋକାନ୍ତରେ ।୫।

୧. ଯାହାର କେହି ସୁରକ୍ଷାଦାତା ନଥାନ୍ତି ୨. ମୁକ୍ତିଦାତା ୩. ଚଉଦ ଭୁବନ







ଚତୁର୍ବର୍ଗ [୧] ଯାହାର   ଚରଣେ ପରିଚାର   ଚଞ୍ଚଳା ଯାର ଆଗ୍ୟାଁକାରୀ
ଚାହିଁ ଯାର ଶ୍ରୀମୁଖ   ଚିତ ଦୁରିତ ଦୁଖ   ସେ ପ୍ରଭୁ ଭୃତ୍ୟ ତ ଭିଖାରି, ହେ ମହାପ୍ରଭୁ
ଚତୃଦଶ [୨] ଭୁବନ ପ୍ରାଣୀ
ଚକିତ ହେବେ ଏହା ଶୁଣି
ଚିତ୍ର [୩] ନୁହଇଁ ଏହୁ   କଥା ହେ ମହାବାହୁ   ନିଳାଦ୍ରୀଚନ୍ଦ୍ର ଚୂଡ଼ାମଣି ହେ ।୬।

ଚତ୍ୱରୋ ଯସ୍ୟ ବର୍ଗାଃ ପଦ କମଳ ତଳେ ଭାନ୍ତି ଭୃତ୍ୟାଳି କଳ୍ପାଃ
ପଦ୍ମା ପଦ୍ମାସନସ୍ଥା ଶିରସି ଚ ବହତି ଭାରତାଁ ପ୍ରୀତିଯୁକ୍ତା ।
ଦୃଷ୍ଟ୍ୱା ଯସ୍ୟୁଶ୍ରିବକ୍ତ୍ରଂ ଗତ ଦୁରିତ ଜନା ସ୍ତସ୍ୟ ଭୃତ୍ୟୋ ବିପତ୍ତେ-
ର୍ଭିକ୍ଷୁର୍ଭୂତ୍ୱାଽତିଦୁଃଖଂ ଭ୍ରମତି ହି ସତତଂ କୋଽଭବତ୍ କିଂ ନୁ ଚିତ୍ରଂ ।୬।

ଚତ୍ୱାରୋଽନୁଚରା   ଯଦଂଘ୍ରି କମଳେ ବର୍ଗାଯଦାଜ୍ଞାପରା
ଲକ୍ଷ୍ମୀର୍ଦୁଃଖ ମଘଶ୍ଚନସ୍ୟତି ଯଦାସ୍ୟା ଲୋକନେଽସ୍ୟପ୍ରଭୋ
ଭୃତ୍ୟୋ ଭିକ୍ଷୁରିତି ପ୍ରବୃଦ୍ଧ ସମୟେ ପ୍ରାଣୀତଟସ୍ତୋ ଭବେ-
ଦ୍ଦେ ଚକ୍ରାୟୁଧ ନୀଳପର୍ବତହରେ ଚିତ୍ରଂ କଥାଽସୌ ନ କିଂ ।୬।

୧. ପାଠାନ୍ତର : ଚତୁବର୍ଗେ, ଧର୍ମ, ଅର୍ଥ, କାମ, ମୋକ୍ଷ, ୨. ଚଉଦ, ୩.ମାୟା,ମିଛ





ଛାଡ଼ି ସକଳ ଆଶ ତୁମ୍ଭ ପାଦ- ସାରସ[୧] ଭରସା କରିଛି ସନ୍ତତେ
କ୍ଷୋଭ[୨] ସାଗରେ ପଡ଼ି ମରିବା କାଳେ ବୁଡ଼ି ଛାଡ଼ି ତ ଦେଉଅଛ ମୋତେ, ହେ ମହାପ୍ରଭୁ
କ୍ଷିତି[୩] ମଣ୍ଡଳେ ତୁମ୍ଭ ବିନା
କ୍ଷମ କେ ଅଛି ଅନ୍ୟ ସେନା
ଛନ୍ଦ[୪] ନୋହେ ଉଚିତ କହୁଛି ପ୍ରଭୁ ସତ୍ୟ ଯେ ନିନ୍ଦା ତୁମ୍ଭଙ୍କୁ ହି ସିନା ହେ[୫] ।୭।

ଛିତ୍ତ୍ୱାଶାଂ ଦୀନବନ୍ଧୋ ତବ ପଦ କମଳଂ ସନ୍ତତଂ ଶ୍ରୟେଽହଂ
କ୍ଷୋଭାମ୍ଭୋଧୌ କରାଳେ ନିପତନ ସମୟେ ନାଥ ମାଂ ସଂଜହାସି ।
ସଂସାରେଽସ୍ମିନ୍ନପାରେ ତବ ଚରଣ ଯୁଗାଦାଶ୍ରୟୋ ନାସ୍ତି ଚାନ୍ୟଃ
କଶ୍ଚିତ୍ କାରୁଣ୍ୟସିନ୍ଧୋ ମମ ବଚନମିଦଂ ମନ୍ୟତାଂ ନୋଽନୃତଂ ହି ।୭।

ଛିତ୍ତ୍ୱାଶାଂ ସକଳାଂ ତବାଂଘ୍ରିକମଳଂ ପକ୍ଷକୃତଂ ସନ୍ତତଂ
କ୍ଷୋଭାବ୍ଧୌ ପତିତଂ ନିମଜ୍ଜ ମରଣେ ମାଂସଂଜହାସିପ୍ରଭୋ
ଭୂଚକ୍ରେ ଚ ବିନାତ୍ୱ୍ୟାସ୍ତି ଶରଣଂ ନାନ୍ୟତ୍କ୍ଷଣଂ ବୋଚିତଂ
ନ ବ୍ୟାଜଂ କଥୟାମି ସତ୍ୟ ନିୟତଂ ବେଳାନୁସର୍ବଂ ପ୍ରଭୋ ।୭।

୧. ପଦ୍ମ, ୨. ଦୁଃଖ, ଅସନ୍ତୋଷ, ୩. ପୃଥିବୀ, ୪. କପଟ, ୫. ପାଠାନ୍ତର : କ୍ଷିତି ମଧରେ ତୁମ୍ଭ ବାନା
କ୍ଷଂଣ ହେଂ ନାଶ ଅନ୍ୟସେନା
ଛିଦ୍ର ନୁହଇ ଏହୁ କଥା ହେ ମହାବାହୁ ନିନ୍ଦେ ଏତେବେଳକୁ ସିନା, ହେ ମହାପ୍ରଭୁ



ଜଗତ ଅନୁରାଗେ    ଜାତ[୧] ଅବନୀ ଭାଗେ    ଦଇବେ ଜଗତର ନାଥ
ଜଗତ ଜନଙ୍କର    ଭିତରୁ କି ବାହାର[୨]    ମମ କି କାରଣେ ଅନାଥ(ସ୍ତ), ହେ ମହାପ୍ରଭୁ
ଜଗନାଥ ନାମ ବହିବ
ଜନ ଆରତ ନ ଶୁଣିବ (ମ)
ଜଗତପତି[୩] ହୋଇ    ଅନୀତି କଲାଠାଇଂ    ଆଉ କେ କା ଆଗେ କହିବ ହେ ।୮।

ଜାତସ୍ତ୍ୱଂ ଭୂମି ଖଣ୍ଡେ ଦରହରଣବିଧୌ ସନ୍ତତଂ ଜଙ୍ଗମାନାଂ
ଦୈବାତ୍ ସଂସାରମଧ୍ୟାଦତିକୃପଣମତିର୍ମାନୁଷୋଽୟଂ ନ ଭିନ୍ନଃ ।
ନାଥୋ ଭୂତ୍ୱା ଜନାନାଂ ପୁନରପି ମମ ଦୁର୍ଦ୍ଦୈବତୋ ଦୀନବନ୍ଧୋ
ମାଂ ତ୍ରାତୁଂ ନୈବ ଶକ୍ତୋ ଯଦି କଥୟ ହରେ କଂ ସ୍ୱଦୁଃଖଂ ବ୍ରବୀମି ।୮।

ଜାତ ରାଗବଶାତ୍କ୍ଷିତୌ ହି ଜଗତୋ ଦୈବାତ୍ ଜଗତ୍ୟାଃ ପତିଃ ।
ସଂସାରାଜ୍ଜନନାଦହଂନଚ ପୃଥକ୍କସ୍ମାଦନାଥୋଦ୍ଭବ
ମର୍ତ୍ତ୍ୟାର୍ତ୍ତିଂନଚହଂ ସିବିଂନନୁ ଜଗନ୍ନାଥାଭିଧେୟଂ ବହନ୍
ଭୂତ୍ୱାଲୋକପତିଃ ସ୍ମରନ୍ନନୁଚିତଂ କଃ କସ୍ୟବାଗ୍ରେ ବଦେତ୍ ।୮।

୧. ପାଠାନ୍ତର : କ୍ଷାତ ୨. ପାଠାନ୍ତର : ମଧ୍ୟବାହିଂବାହାର ୩. ଜଗତପତ୍ୟ





Source: Author, Digitized by PPRACHIN, SOA



ଝଳିଛି[1] ଏ ବଚନ     ନବପଞ୍ଚ ଭୁବନ     ଆରତ-ଭଞ୍ଜନ ଶ୍ରୀହରି
ଝଞ୍ଜକା[2] ମଣୁଅଛ     କିମ୍ବା ମୋ ବିଷୟରେ[3]     ବିନାଶ କାଳେ ଦଇତ୍ୟାରି, ହେ ମହାପ୍ରଭୁ
ଝାଡ଼େ ଡାକିଲା ଗର୍ଭାଏଣି[4]
ଝାଡିକାରେ ତା ବାଣୀ ଶୁଣି
ଝଟତି ତା ବିପତି     ନାଶି ଏବେ ଅଗତି     ଜନେ ନିର୍ଦ୍ଦୟା କିମ୍ବା ପୁଣି[5] ହେ ।୯।

ଝଞ୍ଜାବଦ୍ ବ୍ୟାଧବାଣାବଳିଦଳିତତନୁଃ କାନନାନ୍ତେ ମୃଗସ୍ତ୍ରୀ
ସ୍ୱାମିନ୍ ପାହୀତି ଯସ୍ମିନ୍ନତିଦରବିବଶା ହୂତବତ୍ୟାର୍ତ୍ତବନ୍ଧୋ ।
ତୂର୍ଣ୍ଣଂ ତ୍ୱଂ ତାମପାସୀର୍ଜଗତି ବିଜୟତେ ବୈଜୟନ୍ତୀତି କସ୍ମାତ୍
ମାଂ ତ୍ରାତୁଂ ଦୀନବନ୍ଧୋ ବହସି କଠିନତାଂ ବ୍ରୂହି କିଂବା ବିଧାସ୍ୟେ ।୯।

ବାଗେଷା ହରିରାର୍ତ୍ତଭଞ୍ଜନ ଇତି ଦ୍ୱିଃସପ୍ତ ଲୋକେଶ୍ୱରେ
ଦୈତ୍ୟାରେ ବିଷୟଂ ମମାର୍ତ୍ତବିଷମଂ କିଂ ମନ୍ୟସେ ମେ ହନି
ଏଣୀ ଗର୍ଭବତୀ ଜୁହାବ ଗହନେ ଶ୍ଚୁଦ୍ୱାତଦୁକ୍ତିଂ ହୃଦା
ସାଚାର୍ତ୍ତିଃ କଥମଦ୍ ବିହୀନଶରଣେ ଲୋକେ ଭବେଦ୍ଦାରୁଣଃ ।୯।

୧. ଆଲୋକିତ ହୋଇଛି, ବ୍ୟାପ୍ତ ହୋଇଛି, ୨. ପାଠାନ୍ତର : ଝେଞ୍ଜକା, ଅର୍ଥ/ ଅନ୍ୟଥା, ୩. ପାଠାନ୍ତର : ଝଟ କାମ... କିମ୍ବା ମୋର ବିପକ୍ଷ
୪. ଗର୍ଭବତୀ ମୃଗୁଣୀ, ୫. ପାଠାନ୍ତର : ଝଟତି ତା ବିପତି  ହରିଲେ ହେ ଶ୍ରୀପତି  ଜନେ ନିର୍ଦ୍ଦୟା କେ ପୁଣି, ହେ ମହାପ୍ରଭୁ





ନିର୍ଦ୍ଦୟା ଥିଲେ ବିତେ      କହ ହେ ପ୍ରଭୁ ମୋତେ      ମୋ ଜୀବ ପ୍ରତି ଆଶା ତୁଟୁ[୧]
ନିଶ୍ଚେ କରଣାନିଧି[୨]      ହେଲେ ଦାରଣ ବୁଧି      ବୋଲି ତ୍ରିଭୁବନେ ପ୍ରକଟୁ, ହେ ମହାପ୍ରଭୁ
ନିର୍ଦ୍ଦୟା ନିଶ୍ଚେ ହେବ ଯେବେ[୩]
ନିଖିଳେ ନିକି ଆଉ ଥିବେ
ନାଗ ନୃପତି ସୁର      ସମୀର ନିଧିଧର[୪]      ଯେ ଯାହା ସତ୍ୟକୁ ଲଂଘିବେ ହେ ।୧୦।

ନାଥଃ ସନ୍ନିର୍ଦ୍ଦୟତ୍ୱଂ ବହସି ହୃଦି ଯଦି ବ୍ରୂହି ମଜ୍ଜୀବିତାଶା
ନୂନଂ ନିର୍ଯ୍ୟାତୁ ଭୂମୌ ପ୍ରକଟତୁ କରୁଣାମ୍ଭୋନିଧେର୍ନିଷ୍ଠୁର ତ୍ୱମ୍ ।
ନାଶେ ଭୂତେ ମୁରାରେ ତବ ପତିତ ପରିତ୍ରାଣ କେତୋ ସମନ୍ତା -
ନ୍ନାଗେଶାମ୍ଭୋଧିଭୂଭୃତ୍ସୁରପବନମୁଖାଃ ସତ୍ୟମତ୍ରାପି ଜହ୍ୟୁଃ ।୧୦।

ନୈରାଶ୍ୟଂ ହୃଦୟେ ଯଦସ୍ତି ବଦମାଂ ମଜ୍ଜୀବିତାଶା ଶତାଂ ।
ତ୍ରୈଲୋକ୍ୟେ ପ୍ରଥିତାଂ କୃପାନିଧିରଭୂନ୍ନୈଷ୍ଠୁର୍ଯ୍ୟ ବାରାଂନିଧିଃ
ନୂନଂ ନିର୍ଦ୍ଦୟତା ଭବିଷ୍ୟତି ଯଦି ସ୍ଥାସ୍ୟନ୍ତି କେ ବାଖିଳା
ନାଗେଶାମରମାରୁତାମୃତଧରୈଃ ସତ୍ୟଂ ତୁ ଲଂଘିଷ୍ୟତି ।୧୦।

୧. ପାଠାନ୍ତର : ଫିଟୁ, ଛାଡ଼ିଯିବା, ୨. ପାଠାନ୍ତର : ନିର୍ଦ୍ଦୟାନିର, ୩. ପାଠାନ୍ତର : ନିର୍ଦ୍ଦୟା/ବୁଧି ୪. ପାଠାନ୍ତର :ନିଧିପାର







ଟିକାଏଁ[1] ବିଳମ୍ବିତ ନକରି ପଣ୍ଡୁସୁତ ଯୋଷିତ ସଙ୍କଟୁ ତାରିଲ[2]
ଟେକ ଦୁସହ ଘୋର ଦରିଦ୍ର ସୁଦାମାର ଦୁସନ ମାତ୍ରକେ ତାରିଲେ, ହେ ମହାପ୍ରଭୁ
ଟେକ କରଣା କଟାକ୍ଷରେ
ଟିକାଏ ବିଲୋକିତ ମୋରେ
ଟଳିବ କି ମହିମା- ସାଗର-ସୁଖ-ସୀମା ଏମନ୍ତ ବିଚାର ମନରେ ହେ ।୧୧।

ଟଣ୍ଟଦ୍ ଘଣ୍ଟା ନିନାଦଂ ଶିଶୁରିବ ସହସା ଦ୍ରୌପଦୀଦୀନବାକ୍ୟଂ
କ୍ଷିପ୍ରଂ ଶ୍ରୁତ୍ୱା ହ୍ୟପାସୀର୍ଦ୍ୱିଜଦରନିକରଂ ଦର୍ଶନାଦଚ୍ଛିନର୍ସ୍ଥଂ ।
ସାର୍ଦ୍ରାପାଙ୍ଗେନ କିଞ୍ଚିତ୍ ସକୃଦପି ରଭସାହଂ ଯଦି ଦର୍ଶନୀୟୋ
ମନ୍ୟେଽରଂ ସଞ୍ଚଳିଷ୍ୟତ୍ୟମଳତରମହୋ ଦୀପ୍ତ ତେଜୋ ମହିମ୍ନଃ ।୧୧।

କୃତ୍ୱା ନୈବ ବିଳମ୍ବିତଂ ଦ୍ରୁପଦଜାଂ ରକ୍ଷି ପ୍ରଭୋସଙ୍କଟାତ୍
ଦାରିଦ୍ର୍ୟମହଦୂଜହାର ବିଷମଂ ଦୃଷ୍ଟ୍ୱା ସୁଦାମ୍ନଃ ପୁନଃ
ଦ୍ରଷ୍ଟ୍ୱା ଚେନ୍ନ୍ରୁଣେକ୍ଷଣେନ ଲଘିମା ସଂସାରସୌଖ୍ୟଂକୃତଂ
କିଂ ତେନ କ୍ଷିତିଦେବ ଦେବ ମହମା ଚିନ୍ତାଉାସ୍ୱଦଣ୍ଟିଉନ୍ତତାଂ ।୧୧।

୧. ପାଠାନ୍ତର : ଟିକାଏ ପଣ୍ଡୁସୁତ, ଅର୍ଥ ଟିକିଏ, ଅଳ୍ପ, ୨. ପାଠାନ୍ତର : ଟିକାଏ ବିଳମ୍ବିତ ନକରି ପଣ୍ଡୁସୁତ ଯୋଷିତ ସଙ୍କଟୁ ତାରିଲ ହେ







ଠାବ ନକରି ଚିତେ      କେଉଂ ଦୋଷକୁ ମୋତେ      ନିରାଶ କରୁଛ ଗୋସାଇଂ
ଠାକୁର ହୋଇ ଭୃତ୍ୟ-   ଠାରେ କଲେ ଏମନ୍ତ      ଆଉ ତାହାର ଗତି କାହିଂ, ହେ ମହାପ୍ରଭୁ
ଠୁଳ ଦୂର୍ଦ୍ଦଶା [1] ଦେଖି ମୋର
ଠିକେ ବା କରଅଛ ଦୂର [2]
ଠଣ ପଦ୍ମଚରଣ      ବିନୁ ପ୍ରତିକାରଣ      ଅଛିକେ ବ୍ରହ୍ମାଣ୍ଡ ଭିତର ହେ ।୧୨।

ବ୍ରହ୍ମାନନ୍ତଦେବାନବଗତ ମହିମନ୍ କଂ ସଧୀକ୍ଷ୍ୟାପରାଧଂ
ସ୍ୱାମୀ ଭୂତ୍ୱାପି ଭୃତ୍ୟେ ତ୍ୟଜସି ଯଦି କୃପାଂ କା ଗତିର୍ବିଶ୍ୱତୋ ମେ ।
ଆଲୋଚ୍ୟାପତ୍ ସମୂହଂ ମମ ଯଦି ଭବତା ତ୍ୟାଜ କାରୁଣ୍ୟ କେତୋ
ବିଶ୍ୱାତ୍ମନ୍ ବୂଧତାଂ ତନ୍ନିଜ ହୃଦି ସତତଂ କୋବିପନ୍ନାଶକଃ ସ୍ୟାତ୍ ।୧୨।

ସ୍ଥାନଂ ଚେତସିନୋ କୃତଂ ମୟି କୁତୋ ଦୋଷାକରୋଷି ପ୍ରଭୋ
ନୈରାଶ୍ୟଂ ପ୍ରଭୁରିତ୍‌ଥମାଚର ସିଚେତ୍ ଭୃତ୍ୟସ୍ୟ କାନ୍ୟାଗତିଃ ।
ସ୍ଥୂଳାଂ ମେ ବିପଦଂ ବିଲୋକ୍ୟ ଚ ବିଭୋ ମାଂ ଦୂରୟସ୍ୟୈବ ବା
ତ୍ୱତ୍ପାଦାମ୍ବୁରୁହଂ ବିନାସ୍ତି ଶରଣଂ କୋବାଜଗତ୍ୟାଂ ସ୍ମର ।୧୨।

୧. ପାଠାନ୍ତର: ବିପତି, ୨. ପାଠାନ୍ତର : କରୁଛ ଅନ୍ତର







ଡେରିଥିଲ ଶ୍ରବଣ ଗଜଆଦି ବ୍ରାହ୍ମଣ ଡାକିବା ମାତ୍ରକେ ଶୁଣିଲ
ଡୋଳା ଗୋଚରେ[1] ଥାଇ ଡାକିଲେ ଶୁଣ ନାହିଁ କର୍ଣ୍ଣ କୁହର କି ମୁଦିଲ, ହେ ମହାପ୍ରଭୁ
ଡାକ ବାଜୁଛି ନିରନ୍ତରେ[2]
ଡାକିଲେ ନଶୁଣ ଆର୍ତ୍ତରେ[3]
ଡରିଲକି ମୋହର ସଙ୍କଟ[4] ଦେଖି ଘୋର ଏଣୁ ବା ବିଚାର ମନରେ[5] ହେ ।୧୩।

ଡିମ୍ଭେନ୍ଦୁଦ୍ଦୀପ୍ତ ଦୃଡୋପଳ ହୃଦୟ ହରା ବାହନ ଦ୍ୱିଡ୍ ଧରିତ୍ରୀ
ଦେବାନାଂ ଦୀନ ବାକ୍ୟଂ ସପଦିହି ଭଗବନ୍ନଶୃଣୋସ୍ତ୍ୱଂ ସମନ୍ତାତ୍ ।
କସ୍ମାଦ୍ଦୃଗ୍ ଗୋଚରେ ତେ ବହୁ ବିକଥୟତୋ ମେ ବିପଦ୍ ବାକ୍ୟଜାଳା
ଶ୍ରୋତୁଂ ବୋ ନିର୍ଦ୍ଦୟତ୍ୱଂ ଭବତି ବଦ ହରେ ଚିତ୍ର ମେତଚ୍ଚରିତ୍ରଂ ।୧୩।

ଶ୍ରୋତ୍ରଂ ଖେନିହତଂ ଗଜାଦନୁବଟୋରାହ୍ୱାନମାତ୍ରେଶ୍ରୁତଂ
ବିଷ୍କପ୍ରୋସିପୁରଃ ଶୃଣୋଷି ନଚ କିଂ କର୍ଣ୍ଣୌବଟୌ ମୁଦ୍ରିତୌ ।
ଆହୂତଃ ଶୃଣୁୟାସ୍ତ୍ୱମିତ୍ୟନୁକଥା ଲୋକେପି ବିଖ୍ୟାୟତେ
ଭୀତଃ କିଂ ବିଷମାମବେକ୍ଷ୍ୟ ବିପଦଂ ତଦ୍ଦ୍ୱୈତବାନ୍ନଶୃଣୋଃ ।୧୩।

୧. ପାଠାନ୍ତର : ଗୋଳରେ, ୨. ପାଠାନ୍ତର : ଭଗତରେ, ୩. ପାଠାନ୍ତର : ଭାବିଲେ ଶୁଣି ଧାଡିକାରେ, ୪. ପାଠାନ୍ତର : ବିପତି, ୫. ପାଠାନ୍ତର :ନ ଶୁଣ କର୍ଣ୍ଣରେ





ଢାଳେ ତୁମ୍ଭ ବାହାରେ ଅଛି କେ ବ୍ରହ୍ମାଣ୍ଡରେ[1] କାହାଗେ କହିବି ମୁଁ ଆଉ
ଢାଳେ ବିପଦାର୍ଣ୍ଣବେ ଭାସୁଛି ଭୃତ୍ୟଏବେ ତୁମ୍ଭ ପରାଏ ପ୍ରଭୁ ଥାଉଂ, ହେ ମହାପ୍ରଭୁ
ଢମାଳି ପ୍ରାୟେ ମୋ ଉତ୍ତର[2]
ଢାଳେ ନ ମଣ ଚକ୍ରଧର
ଢଳି ଯାଉଛି ଜୀବ ଦେଇ କରଣା ନାବ ଉଧରି ଧର ବିଶ୍ୱମ୍ଭର ହେ ।୧୪।

ଢକ୍କା ଧ୍ୱାନାଳିବନ୍ତେ ଢରଗିରମଖିଳଂ କସ୍ୟ ପାର୍ଶ୍ୱେ ସମନ୍ତାଦ୍
ବକ୍ଷ୍ୟେଽହଂ କୋଽସ୍ତି ଭୂମୌ ବଦ ତବ ସଦୃଶ ଶ୍ଚିତ୍ରକର୍ମୈକ ଲୋକଃ ।
ନାଥେ ତ୍ୱଯ୍ୟମ୍ବୁଜାକ୍ଷେ ଭବତି ଯଦି ବିପଦ୍ ସାଗରେ ଭୃତ୍ୟ ବର୍ଗୋ
ମଗ୍ନୋଽଭୂତ୍ କଂ ତ୍ରପା ସ୍ୟାଦିତି ସପଦି କୃପା ନୌକୟା ତାରୟସ୍ୱ ।୧୪।

ଲୋକେ ତ୍ୱତ୍ପୃଥଗସ୍ତି କଃ ଖଲୁ ବଦିଷ୍ୟାମ୍ୟଗ୍ରତଃ କସ୍ୟ ବା
ଭୃତ୍ୟସ୍ତେ ବିପଦାର୍ଣ୍ଣବେ ପ୍ଲବତି ଚେତ୍ ତ୍ୱଦ୍ୱତ୍ ପ୍ରଭୁର୍ବର୍ତ୍ତତେ ।
ମଦ୍ୱାକ୍ୟଂ ନଚ ମନ୍ୟତାମରିକର ପ୍ରୋଦ୍ଦାତୁ ବାଚଂ ଯଥା
ପୂର୍ବଂଜୀବବିନାଶତୋଽଦ୍ୟକରୁଣା ନାବଂ ବିତୀର୍ଯ ପ୍ରଭୋ ।୧୪।

୧. ପାଠାନ୍ତର : ଜଗତରେ, ୨. ପାଠାନ୍ତର : ମୋର ଗିର







| | | |
|---|---|---|
| ଆହେ ହେ ମହାବାହୁ | ବିପଦ ଚନ୍ଦ୍ର ରାହୁ | ଆର୍ଗ୍ୟାଁ ଯେ ଦେଇଛ ଶ୍ରୀମୁଖେ |
| ଈତର ଜନ ହୋଇ | ଆରତରେ ଡାକିଲେ | ଆରତ ନ ସହ ନିରେଖେ[1], ହେ ମହାପ୍ରଭୁ |
| | ଆଉ ଆରତି ମୋ ଉପରେ[2] | |
| | ଅଛି କେ ବ୍ରହ୍ମାଣ୍ଡ ଭିତରେ | |
| ଆରତତ୍ରାଣ ତାହା | ଜାଣ ହେ ଚଉବାହା | ପ୍ରତେ ତ ନାହିଁ ମୋ ମନରେ ହେ ।୧୫। |

ଆର୍ଙ୍କା ତେ଼ଽସ୍ୟାଁ ପୃଥିବ୍ୟାଁ ବିକସତି ସତତଂ ଭୋ ବିପଚ୍ଛନ୍ଦ୍ର ରାହୋ
ଭୂଯ୍ୟାଦାଯ୍ୟଂ କୃଶାଙ୍ଗୋ ଯଦି ଗୁରୁରମଳଂ ବାକ୍ୟମୁଚ୍ୟାଦବେତି ।
ତୂର୍ଣ୍ଣଂ ଶ୍ରୁତ୍ୱାର୍ତ୍ତ ବାଣୀଁ ଦରକୁଳମଖିଳଂ ହନ୍ତୁ କାମଃ ସଦାହଂ
ମତ୍ତଃ କୋଽନ୍ୟୋଽସ୍ତି ଦୁଃଖୀ କଥୟ ତବ କଥାଁ ତ୍ୱଂ ଗୃହାଣାର୍ତ୍ତବନ୍ଧୋ ? ।୧୫।

ଆପଚ୍ଛନ୍ଦ୍ର ତମୋ ମହାଭୁଜପୁରୈର୍ବାଙ୍କାକୃତା ଶ୍ରୀମୁଖେ
ଚାର୍ତ୍ତାଙ୍କାପଯ୍ୟତୋନରସ୍ୟ କଦନଂ ସୋଢାସ୍ମିନାପି କ୍ଷଣଂ ।
ଆସ୍ତେ କୋହମିବାର୍ତ୍ତବାଁସ୍ତ୍ରିଭୁବନେ ଜ୍ଞାତଂ ତଦେବଂ ତ୍ୱୟା
ହ୍ୟାର୍ତ୍ତତ୍ରାଣ ଚତୁର୍ଭୁଜାଦ୍ୟ ହୃଦିମେ ନୋବା ପ୍ରତୀତିର୍ଭବେତ୍ ।୧୫।

[1] ଆଗତ ନ ଶଣ କିମ୍ପାଇ , ୨ . ପାଠାନ୍ତର : ଆଉ ଆରତି ମୋହଠାରେ, ଅର୍ଥ ଆର୍ତ୍ତୀ







ତୁମ୍ଭେ ତ୍ରିତାପହର[୧]　　ତ୍ରିଭୁବନ ଈଶ୍ୱର　　ପତିତଜନ ନିସ୍ତାରଣ[୨]
ତେଣୁ ମନେ ମୋହର　　ଭରସା ନିରନ୍ତର　　ଯେଣୁ ମୁ ପତିତ ଦୂଷଣ[୩], ହେ ମହାପ୍ରଭୁ
ତଥାପି କରଣା ନିଧାନ
ତ୍ରାହି ନ କଲେ ଦୀନଜନ
ତେଣୁ ତୁମ୍ଭର ନାମ　　ଦୀନବନ୍ଧୁ-କେତନ　　ତେଜ ତ୍ରିଭୁବନ ମୋହନ ହେ ।୧୬।

ତ୍ୱଂ ତାପୋତପ୍ତ ଲୋକ ପ୍ରଖର ଦର ପରିତ୍ରାଣ ଭବ୍ୟୋ ମହାତ୍ମନ୍
ଭୂତାନାମୀଶ୍ୱରତ୍ୱଂ ପ୍ରକଟୟସି ହରେ ଖ୍ୟାତିମେତାମବନ୍ୟାମ୍ ।
ଶ୍ରୁତ୍ୱାହଂ ତ୍ୱତ୍ ପଦାମ୍ଭୋରୁହଯୁଗମମଳଂ ସଂଶ୍ରୟେ ସାମ୍ପ୍ରତଂ ମାଂ
ତ୍ରାୟସ୍ୱାମ୍ଭୋଦକାନ୍ତେ ନ ତୁ ତବ ପତିତ ତ୍ରାଣ କେତୁଂ ଜହୀହି ।୧୬।

ତ୍ୱଂ ତାପତ୍ରିତୟାପହସ୍ତ୍ରିଭୁବନେ ତ୍ୱଂ ବୈ ତ୍ରିଲୋକେଶ୍ୱର
ସ୍ତନ୍ମେ ଦାର୍ଢ୍ୟମଭୂଦ୍ୟତୋସ୍ମି ପତିତେ ଚୂଡ଼ାମଣି ସର୍ବଦା ।
ନୋପାୟାତ୍କରୁଣାନିଧାନ ଯଦିବା ଦୀନଂ ତତଃ କେତନଂ
ନାମାଦି ତ୍ୟଜଦୀନବନ୍ଧୁରିତିତେ ତ୍ରୈଲୋକ୍ୟ ସମ୍ମୋହନମ୍ ।୧୬।

ତ୍ରିତାପ : ଭୌତିକ, ଆଧିଭୌତିକ, ଆଧ୍ୟାତ୍ମିକ ତାପକୁ ଯେ ହରଣ କରନ୍ତି, ୨. ପାଠାନ୍ତର : ନିବାରଣ, ୩. ପାଠାନ୍ତର : ଏଣୁ ସୁଖଗତି ଦୂଶଣ





ଥଏ ନୋହୁଛି ମନ    ଯେହ୍ନେ ବିଜୁଳି ଘନ    କମଳ-ଦଳ-ବନ[୧] ପ୍ରାଏ
ଥିଲା ଯେଉଁ ପ୍ରଭୁଙ୍କୁ    ଆଶା ଉଧରିବାକୁ    ଦେଖି ସେ ପ୍ରଭୁର ନିର୍ଦୟେ[୨], ହେ ମହାପ୍ରଭୁ
ଥୁଳ କେ ଅଛି ବ୍ରହ୍ମାଣ୍ଡରେ
ଥଏ ବା କେ କରିବ ମୋରେ
ଥିତି[୩] ଆଦି ପ୍ରଳୟ    ଯାର ଆଗ୍ୟାରେ ହୋଏ    ସେ ପ୍ରଭୁ ନ ରଖିଲାଠାରେ[୪] ହେ ।୧୭।

ସ୍ଥୈର୍ଯ୍ୟଂ ନୀଳାମ୍ବୁଜାକ୍ଷ କ୍ଷଣ ରୁଚି ରୁଚିବନ୍ନୀରଦେ ଚେତସି ମେ
ଭୂୟୋନାସ୍ତି ପ୍ରଭିନ୍ନାଞ୍ଜନଜିତି ସୁତନୌ ବୀକ୍ଷ୍ୟ ତେ ନିର୍ଦ୍ଦୟତ୍ୱଂ ।
ସୃଷ୍ଟି ସ୍ଥିତ୍ୟାଦି ନାଶୋ ଭବତିହି ସତତଂ ଚାଜ୍ଞୟା ଯସ୍ୟ ସୋଽୟଂ
ନାଥୋ ମାଂ ଯନ୍ନପାସୀର୍ଭବତୁ ବତ ଭୁବି ତ୍ରାଣତଃ କଂ ବ୍ରବୀମି ।୧୭।

ସ୍ଥୈର୍ଯ୍ୟଂ ନୈତି ମନୋ ଘନେ ତଡିଦିବାମ୍ଭୋଜ ଛଦେ ବାରିବ-
ଦ୍ୟାଶାତେ ସ୍ଥିତମାଶୟାର୍ବତୁମଳଂ ତ୍ୱଂନିର୍ଦୟୋଽଭୂଦ୍‌ଯତଃ ।
ଲୋକେ କଃ ଖଲୁ ବର୍ତ୍ତତେ ସ୍ଥିରତରଃ କର୍ତ୍ତା ଚ ମାନଃ ପୁନଃ
ସ୍ଥିତ୍ୟାଦି ପ୍ରଳୟା ହି ଯସ୍ୟ ବଶଷାସ୍ତସ୍ମିନ୍ନଭକ୍ଷ୍ମାପରେ ।୧୭।

୧. ପାଠାନ୍ତର : ନଳିନୀ ଦଳ, ୨. ପାଠାନ୍ତର : ସ୍ଥିତ କେ ଅଛି ଜଗତରେ, ୩. ସ୍ଥିତି, ୪. ପାଠାନ୍ତର : ସେ ପ୍ରଭୁ ନ ରଖେ ସେଠାରେ







ଦୟା-ସାଗର ବୋଲି ଦମ୍ଭ ତେଜି ଭଜିଲି ଅମ୍ବୁଜଚରଣେ[୧] ତୁମ୍ଭର
ଦେଲେ ଯାର ବିବୁଧ- ପତି-ପଦ[୨] ବିଶୁଧ ମୋ କର୍ମେ ଦୟା ହି ଦୁଷ୍କର[୩], ହେ ମହାପ୍ରଭୁ
ଦୀନବନ୍ଧୁ ନାମ ତୁମ୍ଭର
ଦିସପ୍ତ ଲୋକରେ[୪] ଯେ ସାର[୫]
ଦେଖୁଁ ଦେଖୁଁ ଦୃଗତି ଦେଉଛି ଦଣ୍ଡପତି[୬] ଧ୍ୟେ ତ୍ରପା[୭] ହୋଇବ କାହାର ହେ ।୧୮।

ଦମ୍ଭଂ ତ୍ୟକ୍ତ୍ୱା କୃପାବ୍‌ଧିଃ ପ୍ରଭୁରିତି ମନସା ଚିନ୍ତୟନ୍ ପାଦପଦ୍ମଂ
ଭେଜେଽୟଂ ଯତ୍ କୃପାୟା ବିବୁଧପତିପଦଂ ସ୍ୱେଚ୍ଛୟାପ୍ନୋତି ରଙ୍କଃ ।
ସୋଽୟଂ ମତ୍ କର୍ମତୋ ଯନ୍ନିରବଧି କରୁଣାଂ ଦାତୁମତ୍ରାସମର୍ଥୋଽ
ଭୂତ୍ଦଂ କିଂ ବାଭିଧାସ୍ୟେ ଭୁବି ଭବତି ହରେ କଂ ତ୍ରପା ତଦ୍ ଗୃହାଣ ।୧୮।

ଦମ୍ଭଂ ତ୍ୟଜ୍ୟଯାଭାଜତେଽ ମ୍ବୁଜପଦଂ ସିନ୍ଧୁଃକୃପାୟାଧତୋ
ଯଦ୍ଦାନେ ମିଳତୀନ୍ଦ୍ରଭୂରସୁଲଭା ମତ୍କର୍ମଣେ ତଦ୍ଦୟା ।
ଖ୍ୟାତଂ ନାମ ଚ ଦୀନବନ୍ଧୁରିତି ତେ ଦ୍ୱିସପ୍ତଲୋକାନ୍ତରେ
ଦ୍ରଷ୍ଟୁଂ ଦୁଷ୍ଟମୁପୈତି ଦୁର୍ଗତିରିୟଂ କସ୍ୟ ତ୍ରପାସ୍ୟାପ୍ରଭୋ ।୧୮।

୧. ପଦ୍ମପାଦ, ୨. ଇନ୍ଦ୍ରପଦ, ୩. ଅସମ୍ଭବ, ୪. ଚଉଦଭୁବନ, ୫. ଦଶ ତ୍ରିଭୁବନର ସାର, ୬. ଯମ, ୭. ଲଜ୍ଜା







ଧରିଛି ଏହୁ ଦୁଖ[1]    ମନେ ହେ ପଦ୍ମମୁଖ    ଅଭଯ୍ ପଞ୍ଜରେ ପଶିଲେ
ଧରି ଦାରୁଣ ମୂର୍ତ୍ତି    ହୋଇ ସକ୍ରୋଧ ଅତି    ବିଷମ ସଂକଟ ପଡ଼ିଲେ, ହେ ମହାପ୍ରଭୁ
ଧରି ଯା ନାମ ହୃଦଯ୍ରେ
ଧ୍ରୁବ ପ୍ରହଲାଦ ନିସ୍ତରେ
ଧରି ସେହି ଭରସା    ପତିତ ପ୍ରତି ଆଶା-    କରିଛି ରଜନୀ ବାସରେ[2] ହେ ।୧୯।

ଧତ୍ତେ ଶଶ୍ୱନ୍ନୁରାରେ ସୁଖମିଦମମଳଂ ମାନସେଽଯଂ ସମନ୍ତାତ୍
କୋପଃ ତୀକ୍ଷ୍ଣ ବିପତ୍ତୌ ଗ୍ରସତି ସତି ହରେ ନାମତସ୍ତେ ଧ୍ରୁବୋଽପି ।
ସର୍ବାପଦ୍ଭ୍ୟସ୍ତତାରାମରନିକରଦରାଘାତ କସ୍ୟାର୍ତ୍ତବନ୍ଧୋଃ
ପାଦ ଦ୍ୱନ୍ଦ୍ୱାଶ୍ରଯ୍ଵାତ୍ କିମୁ ଜଗତି ବିପନ୍ନାଂ ନିହନ୍ତୁଂ ସମର୍ଥା ।୧୯।

ଦଧ୍ରେତା ସୁଖମେତଦମ୍ବୁଜ ମୁଖ ତ୍ୱତ୍ପଞ୍ଜରେ ନିର୍ଭଯ୍ରେ
ବକ୍ଷ୍ୟେ ଚେଦ୍ଧୃତରୌଦ୍ରମୂର୍ତ୍ତି ରିତିସଂକୁଦ୍ଧାପଦୋ ଭେଷ୍ୟସି
ଯନ୍ନାମ ସ୍ମରଣାତ୍ ବଭୂବ ସୁଖଦ ପ୍ରହ୍ଲାଦ ଏବ ଧ୍ରୁବୋ ।
ଧୃତ୍ୱାଶାଂପତିତୋହମିତ୍ୟକରବଂ ଦାର୍ଢ୍ୟଂ ତତୋଽହର୍ନିଶଂ ।୧୯।

୧.ପାଠାନ୍ତର : ଧରିଣ ଏହି ସୁଖ, ୨. ଦିବସରେ





| | | |
|---|---|---|
| ନିଗୂଢ଼ ସଙ୍କଟକୁ | ପେସ ସୁଦର୍ଶନକୁ | ଏବେ କି କାରଣେ ନ ପେସ |
| ନିଶ୍ଚେ ନିରେଖ ନାଶ- | ଗଲେ ହେ ହୃଷୀକେଶ | ଏଥି କି ଅଛି ପଉରୋଷ[1], ହେ ମହାପ୍ରଭୁ |
| | ନ ସହ ଆରତ ବିଳମ୍ବ | |
| | ନିସ୍ତାରିଲ[2] ନୃପ କଦମ୍ବ | |
| ନିଧନ ସମୟରେ | କିମ୍ବା ମୋ ବିଷୟରେ | ଏବେ କି କାରଣେ ବିଳମ୍ବ ହେ ।୨୦। |

ନୀଳାଦ୍ରୌ ବାସିନାର୍ତ୍ତ ପ୍ରଖରଦରଭରଂ ଛେତ୍ତୁମୁଗ୍ରଂ ଦରାଙ୍ଗିଂ
ପୂର୍ବସ୍ମିନ୍ ପ୍ରାକ୍ଷିପସ୍ତ୍ୱଂ କଥୟ କିମଧୁନା ନାଚଳନ୍ଧସ୍ତତୋଽୟଂ ।
ନାଶଂ ପ୍ରାପ୍ତେ ହି ଦୀନେ ନହି ନହି କରୁଣାମ୍ଭୋନିଧେ ପୌରୁଷଂ ତେ
କୃତ୍ରାସ୍ତେ ଭୂପବର୍ଗାବନ ଗୁରୁ କରୁଣା ନିଷ୍ଠୁରାଭୂତ୍ କିମତ୍ର ।୨୦।

ବ୍ୟଗ୍ରଂ ପ୍ରେଷୟସିସ୍ମ ସଙ୍କଟମନୁ ତ୍ୱନ୍ନାଦବକ୍ରଂ ଲୁତୋ
ଦୀନୋନଶ୍ୟତିଚେକ୍ଷିତାମ୍ବୁଜମୁଖସ୍ୟାର୍ତ୍ତିଂ ତତଃ ପ୍ରୌଢ଼ତା
କୃତ୍ୱାନାତି ବିଳମ୍ବିତଂ ନୃପକୁଳଂ ଚୋଦ୍ଧାରିତଂ ହି ପ୍ରଭୋ
କିଂ ମୃତ୍ୟୋଃ ସମୟମେବମସ୍ୟ ବିଷୟେ କସ୍ମାତ୍ ବିଳମ୍ବସ୍ତବ ।୨୦।

୧. ପୌରୁଷ, ବଡ଼ପଣ, ୨. ମୁକ୍ତ କଲ





ପରିହରି ସକଳ [1] ଆଶା ହେ ଆଦିମୂଳ ପଡ଼ିଛି ଶରଣ ତୁମ୍ଭରେ
ପ୍ରଭୁ ତ ଅବିଚାର- କରି ଦେଉଛ ଦୂର ପ୍ରଚୁର ସଙ୍କଟ ମୁଖରେ, ହେ ମହାପ୍ରଭୁ
ପରାପର ତୁମ୍ଭର ନାହିଁ
ପରମ ଦୟାଳୁ ଗୋସାଇଂ
ପତିତ ଗତି ହୋଇ ପତିତ ଜନଠାଇଂ [2] ଏଡେ ନିର୍ଦ୍ଦୟା କାହିଂ ପାଇଂ ହେ ।୨୧।

ପୂର୍ଣ୍ଣାଶାଂ ସର୍ବତୋଽୟଂ ପତିତ ଜନ ପରିତ୍ରାଣ ତ୍ୟକ୍ତ୍ୱା ଶରଣ୍ୟଂ
ପାଦଦ୍ୱନ୍ଦ୍ୱଂ ସୁଭକ୍ତ୍ୟା ଭଜତି ନନୁ କଥଂ ସଙ୍କଟାସ୍ୟେ ଦଦାସି ।
ମିତ୍ରାମିତ୍ର ପ୍ରସିଦ୍ଧିର୍ନହି ତବ ଭଗବନ୍ ଯଦ୍ଦା ତ୍ୱଂ ଦୟାବାନ୍
ଭୂତ୍ୱାହୀଣୋଽପି ଭୂୟଃ କିମୁ ପତିତ ଜନେ ନିଷ୍ଠୁରତ୍ୱଂ ଦଧାସି ।୨୧।

ପ୍ରତ୍ୟାଶାଂ ସକଳାଂନରସ୍ୟ ଶରଣାପନ୍ନୋଽସ୍ମି ଦେବତ୍ୱୟି
ନାଥ ପ୍ରେରୟସୀହ ସଙ୍କଟମୁଖେ ତ୍ୟକ୍ତ୍ୱା ବିଚାରଂପୁନଃ ।
ବିଧ୍ୱସ୍ତାତ୍ମପରାବବୋଧନମତୋଽତ୍ୟନ୍ତଂ କୃପାଳୁ ପ୍ରଭୋ ।
କସ୍ମାତ୍ପତିତାଧିପସ୍ୟ ପତିତଶ୍ରେଷ୍ଠେ ଦୟେଷ୍ଟାଦୃଶୀ ।୨୧।

୧. ପାଠାନ୍ତର : ପଣି ହରି ସକଳ ୨. ପାଠାନ୍ତର : ଜନଂକରେ







ଫେଡ଼ି କହିବି କେତେ    ଭରସା ଅଛି ଯେତେ    ତୁମ୍ଭ ଶ୍ରୀଚରଣେ ମୋହର
ଫୁଲେନ୍ଦୀବର କ୍ଷଣ[୧]    ତାହାତ ତୁମ୍ଭେ ଜାଣ    ଜାଣି କରଛ କିମ୍ପା ଦୂର, ହେ ମହାପ୍ରଭୁ
ଫନ୍ଦା ମୁ କରିଛି ତୁମ୍ଭଙ୍କୁ
ଫାଇ[୨] ଦୁସ୍ତର ତରିବାକୁ
ଫଣିଶଯ୍ୟନ ଦୀନ-    ବାନ୍ଧବ ହୋଇ ଭିନ    ହୋଉଛ ନିରେଖ ଜନକୁ[୩] ହେ ।୨୨।

ଫୁଲ୍ଲାଶୋକେଷୁ ତାତ ପ୍ରଚୁରତରଗିରା ପ୍ରସ୍ଫୁଟୀକୃତ୍ୟ ନିତ୍ୟଂ
ତ୍ୱୟ୍ୟାସ୍ତେ ଯା ମମାଶାତତିରିହ କତିଶଃ ସାମ୍ପ୍ରତଂ ତ୍ୱାଂ ବ୍ରବୀମି ।
ଜ୍ଞାତୁଂ କୋ ବା ସମର୍ଥଃ ଖଲୁ ଧରଣୀତଳେ ତ୍ୱଦ୍ ବିନା ଦୀନବନ୍ଧୁ
ର୍ଭୂତ୍ୱା ତ୍ୱଂ ଯନ୍ନପାସୀଃ ପ୍ରକଟତୁ ଭୁବନେ ନିର୍ଦ୍ଦୟତ୍ୱଂ ତବୈବ ।୨୨।

ଫୁଲ୍ଲେନ୍ଦୀବରନେତ୍ର ତେ ଚରଣଯୋରାଶାସ୍ତି ମେ ଯାବତୀ
କିଂ ବକ୍ଷ୍ୟେ ବିଦିତଂତ୍ୱୟା ତଦପି କିଂ ଜ୍ଞାତ୍ୱାଚ ମାଂ ଦୂରୟେଃ ।
ତର୍ତ୍ତୁଂ ବୈ ଦୃଢ଼ ସଙ୍କଟାନ୍ୟକରବଂ ତ୍ୱାମେବପାତ୍ରଂ ପ୍ରଭୋ
ଭୋ ଭୋ ଭର୍ଯ୍ୟ ଦୀନବନ୍ଧୁରଗତି ଭିନ୍ନଂକରୋଷ୍ୟେବ କିଂ ।୨୨।

୧. ପାଠାନ୍ତର : ଫୁଲ ସିକରକ୍ଷଣ, ୨. ପାଠାନ୍ତର :କର ଅରକ୍ଷ ଜନଙ୍କୁ, ୩. ଯାହାର କେହି ନାହିଁ







ବନଜ କରେ ଯାନ    ଚରଣ ବିଲୋକନ    କରି[1] ପ୍ରମୋଦ ହୋଉଥାଇ
ବିଷମ ସମୟରେ    ମୋହ ପକ୍ଷପାତରେ    ପ୍ରତିକାର କରିବାପାଇଁ ହେ, ମହାପ୍ରଭୁ
ବିଷମ ସଂକଟ ପଡ଼ିଲା
ବାରେ କି ଚକ୍ର ନ ଭେଦିଲା
ବିନାଶିବାର ଗାଢ଼[2]  ସଂକଟମାନ ଦାଢ଼    ଚକ୍ର କି ବକ୍ରକୁ ଭଜିଲା[3] ହେ ।୨୩।

ବିଶ୍ୱସ୍ତତୀକ୍ଷ୍ଣ ଚକ୍ର ତବ କର କମଳେ ନିତ୍ୟଶୋଽହଂ ବିଲୋକ୍ୟ
ନିନ୍ଦାକୂପାର ମଗ୍ନୋଽପ୍ୟଭବମନୁଦିନଂମଦ୍ ବିପନ୍ନାଶନାର୍ଥମ୍ ।
ଘୋରୋଽଭୂତ୍‌କଷ୍ଟରାଶିସ୍ତଦପି ସୁକରୁଣା ନାଭବଦ୍ଦୀନବନ୍ଧୋ
ମନ୍ୟେଽହଂ ତସ୍ୟ ଧାରା ବିଷମତର ବିପନ୍ନାଶତୋ ବକ୍ରମାପତ୍ ।୨୩।

ବୀକ୍ଷ୍ୟାମ୍ଭୋଜକରଂ ରଥସ୍ୟଚରଣଂ ନିତ୍ୟଂ ପ୍ରମୋଦୋଭବେ-
ତ୍ତର୍ତ୍ତାପକ୍ଷମଯୋପକାରମତୁଳଂ ମହ୍ୟକ୍ଷପାତାଦିକମ୍ ।
ଉତ୍ପନ୍ନଃ ଖଲୁ ସଂକଟାଭିବିଷମୋ ନାଭେଦି ତେନ ପ୍ରଭୋ
ଚ୍ଛେଦାଦ୍ଧୋରତରାପଦାଂ କୁଟିଳତା ମାପେବଧାରୋଧ୍ରୁରା ।୨୩।

୧. ପାଠାନ୍ତର : ଦେଖି, ୨. ଅତିଶୟ, ବହୁତ, ୩. ବଙ୍କା ହୋଇଗଲା







ଭୂବିଭାରା[୧] ହରଣେ　　ପତିତ ନିସ୍ତାରଣେ[୨]　　ଭୃତ୍ୟଜନ ତାରିବାପାଇଁ
ଭାବେ ନୀଳ କନ୍ଦରେ　　ବିଜେ କରିଛ କରେ　　କମ୍ବୁ ଚକ୍ର ଭୂଷିତ ହୋଇ ହେ, ମହାପ୍ରଭୁ
ଭକ୍ତବତ୍ସଳ ତୁମ୍ଭ ବାନା
ଭବଭୟକୁ ବଜ୍ରସେନା[୩]
ଭବ-ସାଗରେ ଯେବେ　　ଭାସୁଛି ଭୃତ୍ୟ ଏବେ[୪]　　ଏ ନିନ୍ଦା ତୁମ୍ଭକୁ ହିଁ ସିନା ହେ ।୨୪।

୧. ପୃଥିବୀର ତାପ, ୨. ପାଠାନ୍ତର : ଜଗତ ନିବାରଣେ, ୩. ପାଠାନ୍ତର : ବଜ୍ରସେହ୍ନା, ୪. ପାଠାନ୍ତର : ଭବ ସାଗରେ ଏବେ ଭାସିବ ଭୃତ୍ୟ ଯେବେ

ଭୂଭାରାଳିଂ ନିହନ୍ତୁଂ ପତିତଜନମଭିତ୍ରାତୁମୁଦ୍ଧର୍ତ୍ତୁମାପଦ୍
ଗ୍ରସ୍ତାନ୍ ଭୃତ୍ୟାନ୍ ସମନ୍ତାଜ୍ଜୟସି ଗିରିଦରେ ନୀଳଶୈଳେଃରିପାଣେ ।
ଭକ୍ତସ୍ନେହୈକବନ୍ଧୋ ଭବକଲୁଷତମୋ ବ୍ୟୂହ ମାର୍ତ୍ତଣ୍ଡକାନ୍ତେ
ବିଶ୍ୱାବ୍‌ଧୌ ଭୃତ୍ୟବର୍ଗଃ ପତତି ଯଦି ତଦା ସ୍ୟାଜ୍ଜୁଗୁପ୍‌ସା ଭବନ୍ତଂ ।୨୪।

ଭୂଭାରାହରଣେ ପ୍ରଭୋ ହି ପତିତତ୍ରାଣେ ଚ ଭୃତ୍ୟାବନେ
ନୂନଂ ନୀଳମହୀଧରେ ବିଜୟସେ ଶଙ୍ଖାରି ଜୁଷ୍ଟେକରେ
କ୍ଷ୍ମାଭୀତଂ ପ୍ରତି ଭକ୍ତବତ୍ସଳ ଇତି ତ୍ୱତ୍‌ପ୍ରତାପାଦିଭି-
ର୍ଭକ୍ତଶ୍ଚେତ୍ ପତିତୋ ଜଗଜ୍ଜଳନିଧୌ ନିନ୍ଦା କିଳେୟଂ ପ୍ରଭୋ ।୨୪।





ମହାପ୍ରଭୁ ଅନ୍ତର    କଲେ ହେଁ ତ ମୋହର    ତୁମ୍ଭ ବିନୁ ଦୋସର[୧] ନାହିଁ
ମୃଗଧୃତ[୨] -ଚକୋର   ଚାତକ-ଜଳଧର    ମୀନ-ଜୀବନ[୩]-ପ୍ରାୟେ ହୋଇ, ହେ ମହାପ୍ରଭୁ
ମୋରେ ଯେବେ ଦୟା ନୋହିବ
ମୋ ଜୀବ କ୍ଷଣେ ନ ରହିବ
ମହତ କରି କହୁଅଛି ହେ ମହାବାହୁ    ସବୁରି ସଂଶୟ ତୁଟିବ ହେ ।୨୫।

ମାର୍ତ୍ତଣ୍ଡଂ ବା ରଥାଙ୍ଗୋ ଜଳଦମିବ ହରିର୍ମାନସଂ ବା ମରାଳେ
ମୂଢ଼ଂ ମାଂ ତ୍ୟକ୍ଷ୍ୟସି ତ୍ୱଂ ଯଦପି ନବଘନଶ୍ୟାମ କିଂ ସନ୍ତ୍ୟଜାମି ।
ମର୍ଯ୍ୟାର୍ତ୍ତେ ତେଽନୁକମ୍ପା ନ ଭବତି ଯଦି ମଜ୍ଜୀବନଂ ଯାତି ନୂନଂ
ଜ୍ଞାତ୍ୱୈତଦ୍ଧୀନବନ୍ଧୋଽନୁଦିନମିବ ମହାସଂଶୟଂ ଛିନ୍ଧି ଦୁର୍ଣ୍ଣମ୍  ।୨୫।

ମା କୁର୍ବନ୍ନପିଚାନ୍ତରଂ ତବବିନା ନୋ ନାସ୍ତି କଶ୍ଚିତ୍ପ୍ରଭୋ ।
ମତ୍ସ୍ୟସ୍ତୋକକୟୋର୍ଯଥା ମୃଜଳଦୌଚନ୍ଦ୍ରଶ୍ଚକୋରସ୍ୟ ଚ
ନସ୍ୟାଚ୍ଚେତ୍କରୁଣାମୟି କ୍ଷଣମଥା ସ୍ଥାତା ନମଜ୍ଜୀବନଂ
ଦୀର୍ଘବକ୍ମି ମହାଭୁଜାତ୍ର ଭବିତା ସର୍ବସ୍ୟ ହା ସଂଶୟଃ ।୨୫।

୧. ବନ୍ଧୁ, ୨. ଚନ୍ଦ୍ର, ୩. ପାଣି



ଯା ନାମ ସୁମରଣେ ମରଣ ଭୟ କ୍ଷଣେ ନୋହେ ଦଣ୍ଡଧର ଦଣ୍ଡକୁଁ[1]
ଜଗତ ନିସ୍ତାରଣ ଥାଉ ଯେବେ କାରଣ[2] ଭଜିଲି ବିପଦ କାଣ୍ଡକୁ, ହେ ମହାପ୍ରଭୁ
ଜୀବ ଯିବାର ବଡ଼ ସୁଖ
ଜୀଇବା ସମ ନାହିଁ ଦୁଖ
ଯାର ସାମନ୍ତ ଚଉବର୍ଗର ଅଧିକାରୀ ତାର ସେବକର ଏ ଦୁଖ, ହେ ।୨୬।

ଯନ୍ନାମାଳିଂ ବିଚିନ୍ତ୍ୟାତିଶଯ୍ୟ କଳୁଷ କୃନ୍ତାନୁଷଃ ପ୍ରେତନାଥ
ସ୍ୟୋତ୍‌କୃଷ୍ଟାଂ ଦଣ୍ଡ ଚର୍ଚ୍ଚାଂ ନ ଗଣୟତି ଦୃଶା ନନ୍ଦକନ୍ଦାତି ମଗ୍ନଃ ।
ତଦ୍ ଭୃତ୍ୟୋଽୟଂ ସମନ୍ତାଦ୍ ଭବତି ଯଦି ବିପନ୍ନାର୍ଣ୍ଣସ୍ୟାପି ଲକ୍ଷ୍ୟଃ
କିଂ ପ୍ରାଣୈର୍ଯାନ୍ତୁ ନିତ୍ୟଂ ନୟତି ଭବତି ଚେତ୍ ପ୍ରାଦୁରାସୀନ୍ନ ଦୁଃଖମ୍ ।୨୬।

ଯନ୍ନାମ ସ୍ମରଣାନ୍ମୃତୌ ଲଘୁଭୟଂ ନାସ୍ତ୍ୟାର୍କିଦଣ୍ଡେ ଭବାନ୍
ସତ୍ରାତା ଜଗତୋପି ଦାରୁଣତରୋ ଭୂୟାଦ୍‌ବିପତ୍ତୌ ଯଦି ।
ଜୀବୋ ଯାତି ସୁଖଂ ସ୍ଥିତେ ଚ କଦନଂ ବର୍ଗେ ଚତୁର୍ଣ୍ଣାଂ ପ୍ରଭୋ
ଯନ୍ନାଥୋଧିକ ଦେବ ତତ୍‌ପରିଜନସ୍ୟେଦଂ ହି ଦୁଃଖଂ ଯତଃ ।୨୬।

୧. ପାଠାନ୍ତର : ଯା ନାମ ସମ୍ଭରଣେ ହୋଇ ଯେତେ ମରଣେ ଦାରଣ ଭୟ ଚିତ ନୋହେ, ୨. ପାଠାନ୍ତର : ହୋଇ ଏତେ ଦାରଣ







ରାଜିବ- ପଦ ଯାର କରେ ପାଷାଣ ନର[୧] ଶୋକ କଲୁଷ ନିବାରଣ[୨]
ରଙ୍କ ପ୍ରାୟେକ ତାର ପରିଚାର ହେବାର[୩] ଏ ନିକି ପ୍ରଭୁକୁ ଭୂଷଣ ହେ, ମହାପ୍ରଭୁ
ରମା ଯାହାର ପ୍ରିୟବତୀ
ରସାଦି ତ୍ରୈଲୋକ୍ୟର ପତି
ରତିଏ ତ ସୁନ୍ଦର ନୋହିଲା ଚିତେ ମୋର ଏ ନିକି ପ୍ରଭୁପଣ ରୀତି ହେ ।୨୭।

ରାଜତ୍ ପାଦାରବିନ୍ଦୋଦ୍‌ଭବ ଲଳିତ ରଜୋ ଯେ ଗତୋ ଯସ୍ୟ ଶୀଘ୍ରଂ
ଗ୍ରାବାଭୂଦ୍ ଦିବ୍ୟ ବାଳା ଦିଶି ଦିଶି ଭବତ ସ୍ତସ୍ୟ ଭୃତ୍ୟୋଽପି ଶଶ୍ୱତ୍ ।
ରଙ୍କୋ ଭୂତ୍ୱା ମୁରାରେ ଭ୍ରମତି ଯଦି ତଦା ସ୍ୱାମିନୋ ଭୂଷଣଂ କିଂ
ହ୍ୟେତଦ୍ ଭୂୟୋଽପିଭୂମୌ ନ ତୁ ଭବତି କଦା ସୁନ୍ଦରଂ ବାଣୁମାତ୍ରମ୍ ।୨୭।

ରାଜୀବାଂଘ୍ରି ଯୁଗେନ କଲ୍ମଷହୃତାଯସ୍ୟାଶ୍ମମର୍ତ୍ତ୍ୟଂକୃତା
ତଦ୍ଭୃତ୍ୟୋ ଯଦି ନୀଚବଦ୍‌ବିହରତେ ତତ୍କିଂ ପ୍ରଭୋ ଭୂଷଣମ୍ ।
ଜାୟା ଯସ୍ୟ ରମା ତ୍ରିଲୋକଜନନୀ ତସ୍ୟ ପ୍ରଭୋଃ କିଂ ଦ୍ୱସୌ
ରୀତିଃ ପୂଜ୍ୟତମା ପୁନର୍ବ୍ୟବହୃତି ଶ୍ଚେୟଂ ପ୍ରବୁଦ୍ଧା କିମୁ ।୨୭।

୧. ପାଠାନ୍ତର : ପାଷାଣ କଳେବର, ପଥର ହୋଇ ପଡ଼ିରହିଥିବା ଅହଲ୍ୟା ତମ ପଦ୍ମପାଦ ସର୍ଶରେ ସ୍ୱରୂପ ଫେରି ପାଇଲା,
୨. ପାଠାନ୍ତର : ଶୁକ କଳୁସ ନିବାରଣ, ୩. ପାଠାନ୍ତର : କରିବାକ ବେଭାର





ଲଲାଟର ଲିଖନ କେ କରିପାରି ଆନ ଏମନ୍ତ ଆଗ୍ୟାଁ ହେବ ଅବା
ଲଭି ତୁମ୍ଭଙ୍କୁ ପତି- ପଣେ ହେ ରମାପତି କର୍ମକୁ କିମ୍ପା ଆଦରିବା ହେ, ମହାପ୍ରଭୁ
ଲୀଳା ମାତ୍ରକେ ଏ ସଂସାର
ଲୁତା° ସୂତା ପ୍ରାଏ ସଂହର
ଲୋକ କର୍ମକୁ ଏହୁ- କଥା ହେ ମହାବାହୁ ଯେମନ୍ତ ବିଚାର ମନର ହେ ।୨୮।

ଲଲାଟାଁ ବର୍ଣ୍ଣମାଳାଁ ଜଗତି କଥମହୋଽପ୍ୟନ୍ୟଥା କଃ କରିଷ୍ୟ -
ତ୍ୟସ୍ମିନ୍ନିତ୍ୟଂ ସମନ୍ତାଦ୍ ଯଦି ସପଦି ହରେ ବକ୍ଷ୍ୟସି ଶ୍ରୂୟତାଁ ତତ୍ ।
ଲବ୍ଧଶ୍ଚେଦ୍ ବିଶ୍ୱମୂର୍ତ୍ତିର୍ଦରହରଣବିଧାବାଦୃତଂ କର୍ମଜଂ କିଂ
ଲୀଳାଯୈ ଯସ୍ୟ ବିଶ୍ୱୋ ଭବତି ହରିରୟଂ ଚେତତୁ ପ୍ରାକ୍ତନଂ ମେ ।୨୮।

ଲାଲାଟାକ୍ଷରମନ୍ୟଥା ରଚୟିତୁଂ କୋବା ସମର୍ଥୋଭବେ-
ଦିତ୍ଥଂଚେତ୍କମଳାଧବ ତ୍ୱୟି ପତୌ କର୍ମାଦରିଷ୍ୟାମି କିଂ ।
ଲୂତାତନ୍ତୁବଦାହରେଜ୍ଜଗଦିଦଂ ଲୀଳାତିମାତ୍ରାପ୍ରଭୋ
ତସ୍ମାନ୍ନୂନତରଂ ମହାଭୁଜ ଜନାଦୃଷ୍ଟଂ ନ କିଂ ମନ୍ୟସେ ।୨୮।

୧. ବୁଢ଼ିଆଣି





ବିଚିତ୍ର କରି ଗୁରୁ  ସୁତ ଶମନପୁରୁ[1]  ଇଷିତ[2] ମାତ୍ରକେ ଆଣିଲ
ବିଂଶକର[3] ଅମର  ବର କରି ବିଧୁର  ବିନାଶି ବିଧିକି ଜିଣିଲ,[4] ହେ ମହାପ୍ରଭୁ
ବିଷମ ସଂକଟୁ ଉଧର
ବିଶ୍ୱ ସଂସାର କର ପାର
ବିଶେଷେ ବାଞ୍ଛାନିଧି  ବାଞ୍ଛାକର ପରିଧି  ବୋଲି ବହୁତ ବାଞ୍ଛା ମୋର ହେ ।୨୯।

ବୈଚିତ୍ର୍ୟଂ କର୍ମ କୃତ୍ୱା ଗୁରୁତନୟ କୁଳାନ୍ୟନ୍ତକାଦାନୟସ୍ତ୍ୱଂ
ନାଙ୍ଗୀକୃତ୍ୟାବ୍ଜଯୋନେର୍ବଚନମପି ହରେ ପ୍ରାବଧୀର୍ବୈ ଦଶାସ୍ୟମ୍ ।
ବିଶ୍ୱାକୂପାରମଧାଦତିକଲୁଷମତିଂ ପାହି ମାଂ ଦୀନବନ୍ଧୋ ।
ବାଞ୍ଛାକଳ୍ପଦ୍ରୁମତ୍ୱଂ ଜଗତି ବିଜୟତେ ତେ ଯତଃ ସଂଶ୍ରୟେଽହମ୍ ।୨୯।

ବୈଚିତ୍ର୍ୟଂ ଗୁରୁପୁତ୍ରମନ୍ତକପୁରାଦାନୀତବାନଶ୍ରମଂ
ଭୀତ୍ୱାମୃତ୍ୟୁପରଂ ଦଶାନନବରଂ ଧାତାପି ଜିଗ୍ୟେ ପ୍ରଭୋ ।
ପାସି ପ୍ରୋଲ୍ଲଟସଙ୍କଟାତ୍ତ୍ୱନୟସେ ପାରଂ ଜଗଦ୍ୱାରିଧେ
ର୍ବାଞ୍ଛା ଧାନତନୋସିତାମତିତରାଂ ତନ୍ମେ ସ୍ପୃହା ଭୂୟସୀ ।୨୯।

୧. ଯମପୁର, ୨. ଇଂଗିତ, ୩. ରାବଣ, ୪. ପାଠାନ୍ତର : ବିଂଶକର ଅମର ବର କରିଣ ଦୂର ବିନାସି... ଜିଣିଲେ ହେ ।।





ଶେଷ ବିରଞ୍ଚି ଶିବ ସୁରଆଦି ବାସବ ଶୁକ ସନକ ସନାନ୍ତନ[୧]
ସେବେ ଯେଉଁ ପଦ୍ମରେ କୋଟିଲକ୍ଷ ଅନ୍ତରେ ମୁ ଦାସପଣେ କି ଭାର୍ଜନ, ହେ ମହାପ୍ରଭୁ
ସବୁ ଭରସା ଅଛି ଯେଣୁ
ଶରଣ ନିସ୍ତାରଣ ଯେଣୁ[୨]
ଶୁଣିଅଛି ଆହୁରି କଥାଯେ ଚିତ୍ରକରି ସୁମେରୁ ସମ କର ରେଣୁ ହେ[୩] ।୩୦।

ସର୍ପାଧୀଶାବ୍ଜଯୋନି ପ୍ରଭୃତି ସୁରଗଣାଃ ସିଦ୍ଧସଂଘାଃ ଶୁକାଦ୍ୟାଃ
ସେବାଂ କୁର୍ବନ୍ତି ଯସ୍ୟାମଳପଦକମଳେ ଭକ୍ତିତୋଽହର୍ନିଶଂ ବୈ ।
ସ୍ୱାମିଂ ସ୍ତସ୍ୟାପି ସେବାଂ କଥମପି ରଭସା କର୍ତ୍ତୁମୁକ୍ତୋ ଭବେୟଂ
କ୍ୱାସ୍ତେ ତେ ବାନୁକମ୍ପାହ୍ୟଣୁମପି କୁରୁତାମଦ୍ରିବାସିନ୍ନନାଥେ ।୩୦।

ଶେଷାମ୍ଭୋଭବଶଙ୍କରାଃ ସୁରଗଣାଃ ଶକ୍ରାଦୟୋ ଯତ୍ପଦଂ
ସେବନ୍ତେ ସନକାଦି ଲକ୍ଷଋଷୟସ୍ତତ୍ରାସ୍ମି କିଂ ଭାଜନମ୍
ସର୍ବା ଶାନ୍ତି ତତୋ ଯତୋ ଚ ପରିତସ୍ତାଷାଂ ଶରଣ୍ୟାଚଳାଂ
ଭୂୟୋ ଶ୍ରାବି କଥୋଦ୍ଭୁତଂ ଗିରିସମଂ ରେଣୁଂ କରୋଷି ପ୍ରଭୋ ।୩୦।

୧. ପାଠାନ୍ତର : ସନାତନ, ୨. ପାଠାନ୍ତର : ସେବୁଛି ତୁମ୍ଭ ପାଦ ଦୁଇ, ସୁଖସିନ୍ଧୁ ତରିବାପାଇଁ, ୩. ପାଠାନ୍ତର : ଏ ଚିନ୍ତାକରି ସୁମେର ସମକର ରେଣୁ ହେ





ଶୁଣି ତୁମ୍ଭ ଭରସା     ବିଶ୍ରାମ ନାମ ଆଶା     ଖଟିଛି [୧] ତୁମ୍ଭ ଶ୍ରୀଚରଣେ
ସୁଖ ସାଗର ହୋଇ     ଦୁଖ ସାଗରେ ନେଇ     ମେଲି ଦେଉଛ ଅକାରଣେ ହେ, ମହାପ୍ରଭୁ
ସେବିଛି ତୁମ୍ଭ ପାଦ ଦୁଇ
ଶୋକ ସିନ୍ଧୁ ତରିବା ପାଇଂ [୨]
ଶ୍ରୀବତ୍ସ ହେ ଲାଞ୍ଛନ     କର ପ୍ରତିକାରଣ     କରଣା କଟାକ୍ଷେ ଅନାଇ ହେ [୩] ।୩୧ ।

ଷଡ୍‌ବର୍ଗଂ ହନ୍ତୁମେନଂ ମମ ହୃଦୟ ଭବଂ ପାଦପଦ୍ମଂ ସଦା ତେ
ବନ୍ଦେଽହଂ ଦୀନବନ୍ଧୋ ପୁନରପି ସୁଦୃଢ଼ଂ ଦୁଃଖନାଶ ବ୍ରତଂ ହି ।
ଧୃତ୍ୱା ଖେଦାବ୍ଧି ମଧ୍ୟେ କଥମମଳତନୋ ମାଂ ପ୍ରମୁଞ୍ଚେଃ ସ୍ୱକଂ ବୈ
ଜ୍ଞାତ୍ୱା ଶୋକାର୍ଣ୍ଣବାବ୍ଧାଂ ତବ ଖଲୁ କରୁଣା ନୌକୟା ପାହି ବିଷ୍ଣୋ ।୩୧ ।

ଶ୍ରୁତ୍ୱା ଶ୍ରୀନିଧି ରୂପନାମ ଭବତଶ୍ଚିତ୍ତଂନିବେଶ୍ୟାଙ୍ଘ୍ରିଂଶା
ଶର୍ମାବ୍ଧୌ କିମକାରଣଂ କ୍ଷିପସି ମାଂ ଦୁଃଖାମ୍ବୁରାଶୌ ପ୍ରଭୋ ।
ତର୍ତ୍ତୁଂ ଶୋକପୟୋନିଧିଂ ତବପଦଦ୍ୱନ୍ଦ୍ୱଂ ଜନଃ ସେବତେ
ଶ୍ରୀବତ୍ସାଙ୍କ ସମୀକ୍ଷ୍ୟ ମାଂ କୁରୁ କୃପାଦୃଷ୍ଟ୍ୟା ପ୍ରତୀକାରତାଂ ।୩୧ ।

୧. ପାଠାନ୍ତର : କରିଛି, ୨. ପାଠାନ୍ତର : ସବୁଭରସା ଅଛି ଚେଣୁ, ଶରଣ ଶ୍ରୀଚରଣେ ଯେଣୁ, ୩. ପାଠାନ୍ତର : ଶ୍ରୀବଛଲାଞ୍ଛନ କର ପ୍ରତିକରଣ କଟାକ୍ଷେ ଅନାଇ ହେ







ସେବକ ହୋଇ କରି    ପ୍ରଭୁ କୋପକୁ ଡରି    ଯେବେ ଭରସି ନ କହିବ
ଶୁଣ ମହିମା ମେର    ଏ ଦୁଖ ଜଳଧିର    କେମନ୍ତ ପ୍ରକାରେ ତରିବ, ହେ ମହାପ୍ରଭୁ
ସର୍ବଜ୍ଞ[୧] ପୁରୁଷ ଗୋସାଇଁ
ସକଳ ଜୀବ ହୃଦେ ଥାଇ
ସେବକ ଦୁଖ ଜାଣି    ଦୟା ନ କଲେ ପୁଣି    ଆଉ ଜାଣନ୍ତା ଅଛି କେହି ହେ ।୩୨।

ଶଙ୍କାଂ କୃତ୍ୱାପି ଭୃତ୍ୟୋ ଯଦି ମନସି ସଦା ସ୍ୱାମିନି କ୍ରୋଧଯୁକ୍ତେ
ସ୍ୱଂ ଦୁଃଖଂ ନୋ ବଦିଷ୍ୟତ୍ୟତି ଭୟ ଜଳଧେଃ କୋ ବିଗାଢୁଂ ସମର୍ଥଃ
ସ୍ୱାମିନ୍ ସ୍ଥିତ୍ୱା ତ୍ୱମେବାଖିଳ ଜନ ହୃଦୟେ ସେବକସ୍ୟ ତିରିକ୍ତଂ
ଦୁଃଖଂ ଜ୍ଞାତ୍ୱାନୁକମ୍ପାଂ ଯଦପି ନ କୁରୁଷେ କୋଽସ୍ତି ବିଜ୍ଞାତୁମନ୍ୟଃ ।୩୨।

ସାମନ୍ତସ୍ୟ ରକ୍ଷୋଽତିଭୀତ୍ୟ ଯଦିନୋ ବକ୍ତାନୁଜୀବୀ ବଳା-
ଦେତଦ୍ଧୋକ ପୟୋନିଧିଂ ଶୃଣୁ କଥଂ ତର୍ତ୍ତା ଶରଣ୍ୟାଚଳ ।
ସର୍ବଜ୍ଞଃ ପୁରୁଷୋଽସି ସର୍ବହୃଦୟେ ତସ୍ମେ ତ୍ୱୟାଚେତ୍ ପ୍ରଭୋ
ଜ୍ଞାତ୍ୱାସେବକଦୁଃଖ ସେବନ ଦୟା କାର୍ଯ୍ୟନ୍ୟ ରକ୍ଷାକୃତଃ ।୩୨।

୧. ପାଠାନ୍ତର : ସର୍ବଗ୍ୟଂ





ହୃଦରେ ଅଛି ମୋର  ଏ ସଂସାର ସାଗର  ତରିବି ଏହି ମହିମାର
ହୋଉଅଛି ସଂଶୟେ  କିମ୍ବା ମୋର ବିଷୟେ  ଅଶରଣ ମହିମା ମେର, ହେ ମହାପ୍ରଭୁ
ହୋଇଲି କର୍ମର ବଇରି
ହୃଦୟ ନୋହିଲା ତାହାରି[1]
ହେତୁ କର୍ମର ତୁମ୍ଭେ  ତେଣୁ କରି ମୁ ଦମ୍ଭେ  ଗୁହାରି କଲି ଦଇତାରି ହେ[2] ।୩୩।

ହୃଦ୍ୟାସ୍ତେ ମେ ସଦୈତତ୍ ଖଲୁ ଭବ ଜଳଧେ ସ୍ତେମହିମ୍ନୋ ମୁରାରେ
ପାରଂ ଯାସ୍ୟାମି କିନ୍ତୁ ପ୍ରଭବତି ହି ହରେ ସଂଶୟୋ ବା କଥଞ୍ଚିତ୍ ।
ଯସ୍ମାଦାର୍ତ୍ତୈକବନ୍ଧୁର୍ମୟି କିଳ କରୁଣାଂ ଦାତୁମଦ୍ୟାପି ଭୂୟଃ ।
କାର୍ପଣ୍ୟଂ ପ୍ରାପ୍ୟସି ନୋ ବତ ଭୁବନପତେ ଛିନ୍ଧି ମତ୍ କର୍ମପାଶମ୍ ।୩୩।

ହୃଦ୍ୟାସୀଦତିତର୍ଷମେଷଜଗଦମ୍ଭୋଧିର୍ମହିମ୍ନ ସ୍ତୁତଃ
ସଦ୍ରୋହୋ ମୟିଯଦ୍ଵଭୁବମହିମ କ୍ଷୌଣୀଧରୋ ନିର୍ଦ୍ଦୟଃ
ବୈରୀକର୍ମଣି ହାସ୍ତିଚେତି ହୃଦୟଂ ମାଭୂନ୍ମମୈବପ୍ରଭୋ
ତ୍ଵଂ ତଦ୍ଧେତୁମବେକ୍ଷ୍ୟ ଦୁଃଖଶମନାଦମ୍ଭୋନ କିଂ ଜ୍ଞାପ୍ୟସେ ।୩୩।

୧. ପାଠାନ୍ତର : ମୋହରି, ୨. ପାଠାନ୍ତର : ହେତୁକର୍ମରେ ମୁ ଯେ ଗୁହାରିକଲି ବିଶ୍ୱେ



କ୍ଷମା ସାଗର ହୋଇ　　କଥାକୁ ସିନା ମୁହିଁ　　ଛାମୁରେ ଜଣାଉଛି ବାରେ

କ୍ଷଣେ ହେ ଯେଣୁ ଗ୍ୟାଁନ[୧]　　ନ ରହେ ତୁମ୍ଭ ଧ୍ୟାନ　　ଗୁଣଗାୟନମାନଂକରେ, ହେ ମହାପ୍ରଭୁ

କ୍ଷୋଭ ଯେବେ ମନେ ହୋଅନ୍ତା

କ୍ଷଣେ [୨] ଏ ନାମ ନ ତେଜନ୍ତା

ଛାର ହୀନ[୩] ପାମର　　କୃଷ୍ଣଦାସ ଏ ଛାର[୪]　　ଭବ ସାଗରକୁ ତରନ୍ତା ହେ ।୩୪।

ସମାପ୍ତୋୟଂ ଗ୍ରନ୍ଥଃ । ଶ୍ରୀ ଶୁଭମସ୍ତୁ ।

କ୍ଷୋଭୋ ମନ୍ମାନସୋଽୟଂ ଯଦପି ନ ଭବିତା ପାଦପଦ୍ମେ ସଦା ତେ

ଭକ୍ତିଃ କିଂବା ଦୃଢ଼ାସ୍ୟାଦିତି କରୁଣଗିରା ସାମ୍ପ୍ରତଂ ଜ୍ଞାପୟାମି ।

କ୍ଷେମାବ୍ଧେ ମାମଶଙ୍କ କିଳ ଗୁଣ କଥନେ ଶ୍ରୀପତେ ଧ୍ୟାନ ହୀନଂ

ବିଶ୍ୱାବ୍ଧେଃ ପାହି ବିଷ୍ଣୋ ସପଦି ତବ କୃପା ନୌକୟା ଦୀନବନ୍ଧୋ ।୩୪।

କ୍ଷେମାନ୍ ଜ୍ଞାପିତମେବ ବାରମପିତେ ତସ୍ମାତ୍ କ୍ଷମାବାରିଧେ

ଯଜ୍ଞଧ୍ୟାନଗୁଣାନୁବାଦରସିକଂ ନାଭୂନ୍ମଦୀୟଂ ମନଃ ।

କ୍ଷୋଭଶ୍ଚେତସି ନୋ ଭବେଦ୍ୟଦି ଭବନ୍ନାମଂ ତ୍ୟଜେତ୍କୋଽନିଶଂ

ନୂନପାମର କୃଷ୍ଣଦାସ ମିହ କିଂ ବିଭ୍ୟଦ୍ ଭବାମ୍ଭୋନିଧିଂ ।୩୪।

୧. ପାଠାନ୍ତର : କ୍ଷଣେ ଯେଣୁ ମୋ ମନ, ୨. ପାଠାନ୍ତର : କ୍ଷମେ, ୩. ପାଠାନ୍ତର : ଦୀନ, ୪. ପାଠାନ୍ତର : ଛାର ଭବ ସାଗରକୁ ତରନ୍ତା



ରାଗ : କଉଶିକ

କୁମୁଦକାନ୍ତ କଳାପୂର୍ଣ୍ଣ ଆନନ କୋକନଦ[୧] ପ୍ରାଏ ଶୋଭନ
କମଳ-ପାଣି ଗଣ୍ଡଭାଗେ ସଂଯୋଗ କରିଅଛି ଅଧୋଲପନ[୨]
କାନ୍ତେ କୋପିତ, କମ୍ପେ ତା ଅଧର ସୁରଙ୍ଗ
କନ୍ଦର୍ପ-କେଳି-କଳହଂସୀ କି ଆସେ ହେମପଙ୍କ[୩] ବିନୁ[୪] ବିରଙ୍ଗ[୫] ।୧।

୧. ରକ୍ତପଦ୍ମ, ଅନୁରାଗ ଓ ଅଭିମାନରୁ ମୁହଁ ଲାଲ୍‌ବର୍ଣ୍ଣ
୨. ଗାଲରେ ହାତ ଦେଇ ତଳକୁ ମୁହଁକରି ବସିବା
୩. ଓଷ୍ଠାଧର ରଂଗ କରିବାପାଇଁ ବ୍ୟବହୃତ ପ୍ରଲେପ
୪. ବିନା, ୫-ରଂଗହୀନ ।



ପାଠାନ୍ତର : ୧. ଖଟାଙ୍ଗଧର, ଶିବ ୨. ଖଟାଂଗଧର ରିପୁ ଠାରେ- ଶିବଂକର ଶତ୍ରୁ କନ୍ଦର୍ପର ଶର ୩. ବିଷ୍ଣୁ, ୪. ଶରୀର, ଦେହ, ୫- ଶୀଘ୍ର ୬. କ୍ଷରଣ, ଟୋପାଟୋପା ଲୁହବିନ୍ଦୁ ଆଖିରୁ ଝରିପଡୁଛି । ଲାଗୁଛି , ମୋତିମାଳା ଛିଡିପଡ଼ିବାରୁ ମୋତିଗୁଡ଼ିକ ଗୋଟି ଗୋଟି କରି ଖସିପଡୁଛି । ୭.ଭାଂଗିଯିବା,୮. ସରୁ ଅଂଟା ।

ଖଞ୍ଜନ ଲୋଚନୀ ଖେଦଭରେ ଅରୁଣ ଖଟ୍ୱାଙ୍ଗଧର[୧]-ରିପୁ-ଶର[୨]
ଖଗପତିନାଥ[୩] ବପୁ[୪] ବିଦାରି କି ଶ୍ରୋଣିତ ଅଙ୍କିତ ଶୋଭାର
ଖରେ[୫] ଲୋତକ, ଖସିଁ କି[୬] ତୁଟେ[୭] ମୋତିସରି
ଖିନୋଦରୀ[୮] ଅଙ୍ଗୁ ଅନୁରାଗ-ନୀରେ ଖେଦ-ଜଳେ ମିଶି ଉଚ୍ଛୁଳି ।୨।



ଗନ୍ଧ ତିଳେକ କେଉଁ ଗୋପାଙ୍ଗନାର[୧] ଗୋବିନ୍ଦ କପୋଳେ ଅଙ୍କିତ
ଗାଢ଼ ଆଲିଙ୍ଗନ କୁଚର କୁଙ୍କୁମ ହୃଦୟ ମଧ୍ୟରେ ବିଦିତ[୨]
ଗର[୩] ସେନେହା, ଧନ୍ୟ କେ ଗୋପାଙ୍ଗନା ତାର
ଗୋବିନ୍ଦ ସଙ୍ଗେ ଅନୁଭବ ସଂଯୋଗେ ବିଭବ କରିଛି ବାହାର[୪] ।୩।

୧. ପାଠାନ୍ତର ଗୋପଙ୍ଗନା, ୨. ଶୋଭାପାଉଛି, ୩. ଗର : ଭାରି, ଗୁରୁ,
୪. ସୌଭାଗ୍ୟ, ଅର୍ଥ: ଶ୍ରୀକୃଷ୍ଣଙ୍କ ସହ ମିଳନଜନିତ ଅନୁଭବ
ତାକୁ ଧନ୍ୟକରିଛି, ସୌଭାଗ୍ୟବତୀ କରିଛି । ପାଠାନ୍ତର : ଗୋପାଙ୍ଗନା
କେ ଧନ୍ୟ ତାର, ଗୋବିନ୍ଦ ସାଙ୍ଗେ ଅଙ୍ଗସଙ୍ଗ ଇଭିକି ବିଭବ ହୋଇଛି ବାହାର



ପାଠାନ୍ତର: ୧. ଘେନିଲା ମାନ କ୍ରୋଧ ଶୁଭ୍ର ଆନନୀ
ନୃତ୍ୟନ୍ତି ଭୂଲତା: କ୍ରୋଧ ବଶତଃ ଚନ୍ଦ୍ରବଦନୀର ଘଞ୍ଚ ଭ୍ରୂଯୁଗଳ
ଥରି ଉଠିଲା ।
୨. ଅନୁରାଗ ରୂପକ ଚନ୍ଦ୍ରକୁ ମାନରୂପକ କଳାମେଘ ଘୋଟିଲା କି ?

ଘେନିଲା କ୍ରୋଧଭର ଶୁଭ୍ର ଆନନୀ ଘଞ୍ଚେ ନୃତ୍ୟେ ତାର ଭୂର୍ଲତା[୧]
ଘୋଟିଲା ମାନ ଅନୁରାଗ ଚନ୍ଦ୍ରକୁ ଘନ ଘୋର ମେଘ ଅଙ୍ଗେ ତା[୨]
ଘୋଷେ ଅମୀୟ, ମୃଦୁ ବଚନ ମଧୁହାରୀ
ଘେନ ବିନୟ ମନେ ଆନ ନ ଧର ତୁ ମୋ ହୃଦ ହାରାବଳୀ ।୪।



ନୀଳ କୁଟୀଳ କୁନ୍ତଳ ସୁକବରୀ ନିନ୍ଦୁଛି ନବଘନ କାନ୍ତି
ନିଶି ନୀଳ ମେଘେ କିଏ ଉଡୁଗଣ[1] ନିକିଳି[2] କୁସୁମେ ଶୋଭନ୍ତି
ନିରିଦୟା ଗୋ, ସ୍ୱଭାବେ କୁଟିଳ ଜନର
ନିଷ୍ଠେ ମତ୍ତ ଗଜ ଆଣ୍ଠି କଣ୍ଠିରବ ରହିଅଛି ତବ ଭାଲର[3] ।୫।

୧. ନକ୍ଷତ୍ର, ତାରା, ୨. ଏଠାରେ ନାୟିକାର ଘନ
କବରୀର ବର୍ଣ୍ଣନା କରାଯାଇଛି । କବରୀରେ ସୁଶୋଭିତ ଫୁଲଗୁଡ଼ିକୁ
ଦେଖି କବି ଭାବୁଛନ୍ତି- ନାୟିକାର ମୁହଁ ଚନ୍ଦ୍ରପରି ଉଜ୍ଜ୍ୱଳ ଓ କୋମଳ,
କବରୀ ରାତିର ନୀଳମେଘ । ଏଇ ମେଘ ଭିତରୁ ବାହାରି ତାରାମାନେ
ଦିଶୁଛନ୍ତି ଫୁଟନ୍ତା ଧଳା ଫୁଲ ପରି ।, ୩. କପାଳର ରକ୍ତ ବର୍ଣ୍ଣର ସିନ୍ଦୁର
ବିନ୍ଦୁ ସତେ ଯେପରି ସିଂହ ବିଦାରିତ ହାତୀର ରକ୍ତବିନ୍ଦୁ ।



୧. ସୁନ୍ଦର, ୨. ବିଚରଣ କରେ
୩. ଭ୍ରମର ସମୂହ, ୪. ଅର୍ଦ୍ଧ ଚନ୍ଦ୍ର ପରି କପାଳ, ୫. ମନ,
୬. ଧନୁର୍ଦ୍ଧର ବ୍ୟାଧ ବା କନ୍ଦର୍ପର ଏହା ଫାସ କି ?
୭. ଏଠାରେ ନାୟିକାର ଗଣ୍ଡସ୍ଥଳ ବର୍ଣ୍ଣନା କରାଯାଇଛି ।

ଚଟୁଳ[1] ତୋର କର୍ଣ୍ଣଯାଏ ଅଳକା ଚରେ[2] କି ମଧୁକର ମାଳା[3]
ଚକୋରପନ୍ତି ସୁଧାରସ ପାନେ କି ଚନ୍ଦ୍ରାର୍ଦ୍ଧ ଭାଳେ[4] କରେ ଲୀଳା
ଚାରୁ କପୋଳେ, ମୃଗମଦ ଚିତା ଆଭାସେ
ଚତୁର ଜନ ଚିତ୍ତ[5] ବନ୍ଦୀ କାରଣେ ଚାପଧରର[6] କି ଯେ ଫାଶେ[7] ।୬।



ଛିରୋଦ୍ର ସୁତ[୧] ବିମ୍ବ ବିଡ଼ମ୍ବଣ[୨]କୁ କ୍ଷେମ[୩]ମୁଖ କାମ ମୁକୁର
ଛିନ[୪] ଦିଶଇ ଅଞ୍ଜନ- ବାରି ଲାଗିଁ ଛିଦ୍ର ଅଂଚିଣ ଦହେ ମାର[୫]
ଛାଡ଼ି ତାପ ଗୋ, ଛଳ ତେଜି ଦିଅ ଚୁମ୍ବନ
ଛାଡୁ ଶରାସନ[୬] ତୀକ୍ଷଣ ନାରାଜ[୭] କ୍ଷୋଭପାଉ ମନେ ମଦନ ।୭।

୧. ଚନ୍ଦ୍ର, ୨. ବିଡମ୍ବନ, ୩. ସମର୍ଥ , ସୁନ୍ଦର; ଅର୍ଥ: ମୁଖ ଚନ୍ଦ୍ରବିମ୍ବ ଓ କନ୍ଦର୍ପର ଦର୍ପଣଠାରୁ ମଧ ଅଧିକ ସୁନ୍ଦର ।, ୪. କ୍ଷୀଣ, ଅସ୍ପଷ୍ଟ ୫. ମନେ ହେଉଛି, ଅଂଜନର କଳା ଦାଗ ଲାଗି କ୍ଷୀଣ ହୋଇଛି । ଏହା କନ୍ଦର୍ପ ବାଣର ପରାକ୍ରମର ଫଳ ୬. ଧନୁ, ୭. ଶର



ଜଗତ ଜିଣି ମଦନ ଜୟେ ଧନୁ ଜାଣି ଥୋଇଲା ତୋ ଭୁରେ ହିଂ[୧]
ଯୁବାଜନଙ୍କୁ ଏ ମୋହନ ନାରାଜ[୨] ଜାଣି ନ ସେବିଲେ ନ ଜୀଇଂ[୩]
ଜଗତରେ ଗୋ, ଜାଣି ତୁ ଜାଣୁ[୪] ଶିରୋମଣି
ଜୀବ ଡଂସିଲା[୫] ତୋ ଭୂର୍ଲତା ସର୍ପିଣୀ ଦେଇ ରଖ ବିଷ-ବାରିଣି[୬] ।୮।

୧. ଜଗତକୁ ଜୟ କରିସାରି କନ୍ଦର୍ପ ତା ଧନୁକୁ ତୋ ଭୂଲତାରେ ଥୋଇଛି କି ?
୨. ଯୁବାଜନକୁ ଏ ମୋହିତ କରିବାର ଶରପରି
୩. ଏହି ଶରକୁ ବୁଝି ବିଚାରି ଗ୍ରହଣ ନ କଲେ, ତାହା ଜୀବନ ନେବାର ସମ୍ଭାବନା ରହିଛି । ୪. ଜ୍ଞାନୀ, ବିବେକୀ, ୫. ଦଂଶନ କରିବା
୬. ଯାହା ବିଷ ପ୍ରଭାବକୁ ନଷ୍ଟକରେ ।



ଝଲ ଝଲକେ ମଦନ ଜୟ  ଶର ଝଳୁଂଛି ଅଙ୍ଗେ ବାଣକୁଳ
ଝରଂଛି  ରୋମମୂଳେଂ ମୁକ ନାରାଜ ବିପୁଳ ପୁଲକ ଶରୀର
ଝାଡ଼ ଶିଶୁ ଗୋ, ଥାଠୁଂ ବଣା ମୃଗ ଲୋଚନ
ଝମଟେ ଚାହାଁ[1] ତୁ ଭାବ ଅନୁରାଗେ ଝଡୁ ଯେ କାମ ଶରାସନ[2] ।୯।

୧. ପାଠାନ୍ତର ଝଲ ଝଲକେ  ମଦନ ଜୟୀ ଶର ଝଲକୁ  ଅଛି ବାତକୁଳ ଝଲକି ଅଛି  ରୋମ ମୂଳେ ନାରାଜ  ବିପୁଳ ପୁଲକେ ଶରୀର,  ଝାଡ ଶିଶୁ ଗୋ,  ଝାଡୁ ବଣା ମୃଗ ଲୋଚନ,  ଝମଣ୍ଟେ ଚାହାଁ ଭାବ  ଅନୁରାଗେ ଝଡୁ ମଦନ ଶରାସନ ।

୨. ଅର୍ଥ: ଏଠାରେ ନାୟିକା ଆଖିର ବର୍ଣ୍ଣନା କରାଯାଇଛି ।
କୁହାଯାଇଛି-ମଦନ  ଯେଉଁ ପଞ୍ଚବାଣ (ଅଶୋକ, ନବମାଳିକା, ଚୂତ,ଅରବିନ୍ଦ ଓ ନିଆଳି) ରେ ଜଗତକୁ ଜୟକରେ, ସେଗୁଡିକ ଝଲକୁଛନ୍ତି, ରୋମମୂଳରେ ଲାଖିରହି ପୁଲକିତ କରୁଛନ୍ତି । ତୋ ଆଖି  ଦୁଇଟି ଗୋଠରୁ ବଣା ହୋଇ ବାହାରି ଆସିଥିବା ବଣର ମୃଗଶିଶୁପରି ଚଂଚଳ । ତୁ ଟିକିଏ ଅନୁରାଗରେ ଅନିଷା କଲେ କାମ ଶରରେ କ୍ଷତାକ୍ତ ମୋ ଦେହର ଜ୍ୱାଳା ଶାନ୍ତହେବ ।



ନାସାବରେ ଲୁଳେ କୁବଳୟ ଫଳ[1] ନିର୍ମଳ ଜ୍ୟୋତି ସେ ବିକାଶି[2]
ନିଶାନାଥ ପଦ ଆସେ କି ଅଧରୁଂ ନେମ ପୀୟୁଷ ଗତ ଶଶୀ[3]
ନାଶା ଫୁଲାଇ, ନୟନ ବଙ୍କିମେ ଅନାଇ
ନିର୍ଦ୍ଦୟପଣ   ଛାଡ଼ି କହ ବଚନ  କେବଳ ଦ୍ରହସିତ[4] ହୋଇଂ[5] ।୧୦।

୧. ମୁକ୍ତା, ୨. ପାଠାନ୍ତର : ଆଭାସି
୩. ତୋ ଅଧରରୁ ଅମୃତ ନେବା ପାଇଁ ଚନ୍ଦ୍ର ଆସୁଛି କି  ?
୪. ଦରହାସ, ଇସତ୍‌ହାସ, ସ୍ମିତହସ
୫. ପାଠାନ୍ତର : ନିର୍ଦ୍ଦୟପଣ ଛାଡି କହ ସୁନ୍ଦରୀ  କେବଳ ଦରହାସ ହୋଇ ।



ଟହଟହ ଭସ୍ମାନ୍ତର ବିମ୍ବାଧର ଟେକି ଅମାୟ ପୁନ ତହିଁ
ଟାଳ ମନସିଜ ଗରଳ ଜ୍ୱାଳାର ତୋ ଅନୁରାଗ ସୁଧା ଦେଇଂ
ଟେକି ଚାପ ଗୋ, ଟାଣି କର୍ଣ୍ଣଯାଏ ମଯ୍ୟାଣ
ଟାଳିବିନି କି ଜୀବନ ବୋଲି ପୁଛେ ଶ୍ରବଣ ପାଶେ ଚୂତବାଣ ।୧୧।

ପାଠାନ୍ତର : ଟହ ଟହ ଭସ୍ମାନ୍ତର ବିମ୍ବାଧରେ ଟେକ ଅମାୟପୂର୍ଣ୍ଣ ସହୀ,
ଟାକ ମନସିଜ ଗରଳ ମନରୁ ଦଶନ ବାସ ସୁଧା ଦେଇ, ଟେକି ଚାପ ଯେ,
ଟାଣି କର୍ଣ୍ଣଯାଏ ମଯ୍ୟାଣ, ଟାଳିବିନି କି ଜୀବନ ବୋଲି ପୁଛେ ଶ୍ରବଣ ପୁଟେ
ଚୂତବାଣ ।

ଅର୍ଥ : ପାଉଁଶିଆ ଆବରଣ ନ ଥିବା ନାଲି ଟହ ଟହ ବିମ୍ବ ଫଳପରି ତୋ
ଅଧରର ଅମୃତରେ ମୋ କାମତାପକୁ ଶାନ୍ତକର । ଅନୁରାଗ ରୂପକ ସୁଧା ଦେଇ
ଅମୃତରେ କନ୍ଦର୍ପ ବିଷ ଜ୍ୱାଳାରୁ ରକ୍ଷାକର । କନ୍ଦର୍ପ ଧନୁରେ ଗୁଣକୁ କାନ ପର୍ଯ୍ୟନ୍ତ
ଟାଣି, ଚୂତ ବାଣଦ୍ୱାରା ପଚାରୁଛି- ଜୀବନ ନେବି କି ନ ନେବି କହ ।।



ଠଣ ବାରିଜ ପଦ୍ମରାଗ ବେଷ୍ଟିତ ଠିକେ[୧] କୁନ୍ଦିଲା ସୁଧାରସି
ଠିକେ ଇଷିତ[୨] ଦଶନ ଦିଶୁ ହସ ଠିକେ ଅଂଗେ ମୋର ଡଂଶସି
ଠିକ ଚିହ୍ନ[୩] ଗୋ, ଦେଖି କାମ ହୋଉ ବିମନ
ଠକ ନ ମଣ ଜୀବନ ଯାଉଂଅଛି ମନରେ ହୋଅ ପରସନ[୪] ।୧୨।

୧. ପାଠାନ୍ତର ଠାବେ, ୨. ପାଠାନ୍ତର : ଠିକେ ବତିଶ, ୩. ପାଠାନ୍ତର : ଚିତା
୪. ପାଠାନ୍ତର : ଠକ ନ ମଣ ଜୀବନ ଯିବାବେଳେ ଠାବରେ ହୁଅ ପରସନ୍ନ ।
ଅର୍ଥ : ଦାନ୍ତର ଶୋଭା : ପଦ୍ମରାଗ ମଣିଗୁଡ଼ିକୁ ପଦ୍ମଜାତ ଅମୃତ
ରସ ଦେଇ କିଏ କୁନ୍ଦିଲାପରି ମନେ ହେଉଛି । ମୃଦୁହାସ ମୋ ଶରୀରକୁ
ଦଂଶନ କରୁଛି । ଏହି ଚିହ୍ନକୁ ଦେଖି କାମ ବିମନ ହେଉ ।
ସତ କହୁଛି, ତମେ ପ୍ରସନ୍ନ ନ ହେଲେ, ମୋର ଜୀବନ ଚାଲିଯିବ ।



ଡମରୁଧର- ତପ- ହତ[୧] ପଲକେ ଡୋଳେଂ ଦେଖିଲିଂ ବପୁ ତୋର
ଡହକଷ ହେମ[୨] ମଣିମୟ ଯୋଗେ ତାଟଙ୍କ ଉଦିତ ଶ୍ରୁତିର[୩]
ଡୋଳେଂ ସଧୀରେ, ଗଣ୍ଡେ ତୋର ପ୍ରତିବିମ୍ବିତା
ଡଙ୍କଧର-ରିପୁ[୪] ରହୁବରେ[୫] କି ସେ ଚତୁଚକ୍ର ନିର୍ମିଲା ଧାତା ।୧୩।

୧. ତପ କାଳରେ ଶିବଂକ କ୍ରୋଧରେ ଭସ୍ମୀଭୂତ କନ୍ଦର୍ପ
୨. ନିଆଁରେ ବାରମ୍ବାର ପୋଡିହୋଇଥିବା ସୁନା,
୩., କାନ, ୪. ସର୍ପକୁ ଧାରଣ କରିଥିବା
ଶିବଂକ ଶତ୍ରୁ : କନ୍ଦର୍ପ, ୫. ଶ୍ରେଷ୍ଠ ରଥ



ଢାଳିଂ ଅମିୟ ସୁଲଳିତ ବଚନେ ଢମେ ମୂକ ସେ କଳକଣ୍ଠ[୧,୨]
ଢମାଳି[୩] ପ୍ରାଏ ନ ମଣ ପ୍ରାଣସହି ଢାଳେ ଜୀବ ଯିବା ନିକଟ
ଢମ କରିଂବୁ , ଯେ଼ ତୋର କିସ ଆଭରଣ
ଢାଳେ ଜୀବ ଗଲେ ଅକୀର୍ତ୍ତି ପାଇବୁ ଦୁଷିବେ[୪] ତୋତେ ନାରୀଗଣ ।୧୪।

୧. ପାଠାନ୍ତର : ମୂକ ସେ ହେଉ କଳକଣ୍ଠ; ଢମେ ମୁକୁଳ ତୋ ସୁକଣ୍ଠ
୨. କୋକିଳ, ୩. ପରିହାସ, ଗେଲ, ଛଳନା, କଉତୁକ
୪. ପାଠାନ୍ତର : ଦୁଶିବେ, ଦୁଷିବେ : ନିଂଦା କରିବେ



ଅଣକଣ୍ଟକ ବିଷିନୀ ମୃଣାଳେ[୧] ତା ଅଣଚମ୍ପକ ପୁଷ୍ପ ଦିଶେ[୨]
ଅଣଜାଇକଢ଼ି ଦଳ ଦଶ ନହ[୩] ଅନଙ୍ଗ-ଜୟ-ଶର କି ସେ
ଏ ତୋ ଅଣେଖ[୪], ତେଜି ପରିରମ୍ଭ କର ଗୋ
ଅଣଆଏତେଣ[୫] ବୁଡ଼ିଲିଂ ସୁମୁଖୀ ଏଥୁଂ ଉଧାରିଣ ଧର[୬] ଗୋ ।୧୫।

୧. କଣ୍ଟା ନଥିବା ପଦ୍ମନାଡ଼
୨. ପାଠାନ୍ତର : ଅଣକଣ୍ଟକ ବସନି ବାହୁ ଅଣଚମ୍ପକାଙ୍ଗୁଳି
ଦିଶେ, ଅଣଜାତିଦଳ ଦଶ ନହ ଜ୍ୟୋତି ଅନଙ୍ଗରାୟେ ଶର କି ସେ,
ଅଣଖସାରି, ଉଧରି ଧର ଗୋ ମୋତେ
ଆଣାୟତ ଜଳେ ବୁଡିଲି ସୁମୁଖି ତାହି ମୋତେ କର ତୁରିତେ ।
୩. ଦଶ ନଖ, ୪. ଅଣଦେଖା, ଅଭିମାନ, ୫. ଅଣାୟତ, ୬. ଉଦ୍ଧାରକର



ତୁଙ୍ଗ ବୃତୁଳ ପୀନସ୍ତନ ଉପରେଂ ତଥି ମୋତିସରି ଜାହ୍ନବୀ[୧]
ତୋ ବପୁ ଦେଶେଂ ରୋମାବଳୀ କାଳିନ୍ଦୀ ତା ସାଙ୍ଗେ ପୁଣ୍ୟ ଥିଲେ ଲଭି
ତୋ ଏ କୁଚେ ଗୋ, ସଂକଟେ[୨] ମୋ ମନ ରହିଲା
ତୁ ହେନ[୩] କପଟୀ ଅଞ୍ଚଳେ ଢାଙ୍କିଛୁ ସଖୀ ତା ମୋ ଆଗେ କହିଲା ।୧୬।

୧. ବର୍ତ୍ତୁଳ, ଗୋଲାକାର
ତୋ ଛାତିର ଘନ ସ୍ତନ ଉପରେ ମୋତିମାଳ ଗଙ୍ଗାଧାର ପରି ଶୋଭାପାଉଛି
୨. ପାଠାନ୍ତର: ନିକଟେ । ଉଭୟ ସ୍ତନରୂପକ ପର୍ବତର ମଧ୍ୟସ୍ଥଳ
୩. ଏହିପରି,



ଥୁଳ[୧] ତୋ ନିତମ୍ବ କୁମ୍ଭୀ କୁମ୍ଭସ୍ଥଳ ଥାନ ଜାଣିଂ କଣ୍ଠୀ[୨] ରହିଲା[୩]
ଥିର ଚକ୍ଷୁ ତୋ ତରଳଇ ବୋଲିଂ ତ୍ରିବଳୀ ତା ମଝା ବାନ୍ଧିଲା
ଥିର ନୋହଇ, ତେଣୁ ତୋ ଲୋଚନ ଚଞ୍ଚଳ[୪]
ଥକାଇଂ ଅଛି[୫] ତୋହୋ ଗୁଣେ ଜୀବନ କହ କଥା ସଖି ନିର୍ମଳ[୬] ।୧୭।

୧. ପୃଥୁଳ, ୨. ସିଂହ,
୩. ପାଠାନ୍ତର : ଥାନେ କଣ୍ଠୀରବ ରହିଲା,
୪. ପାଠାନ୍ତର : ଥିର ନୋହେ ଗୋ, ଯେଣୁ ତୋ ଚଞ୍ଚଳ ନୟନ
୬. ଥକାଇଂ - ଅପେକ୍ଷା କରିବା
୫. ପାଠାନ୍ତର : ଅନାଇ ଅଛି ତୋର ଗୁଣେ ଜୀବନ ସ୍ଥୁଳ କଥା ନୁହ ବିମନ ।



ଦହ କନେକ କଦଳୀ[୧] ବିପରୀତ ଦୁଇ ଜଘନ[୨] ତୋର ସହି
ଦରରକ୍ତ- ପଦ୍ମ[୩] ପାଦେଂ ବେଷ୍ଟିତ ଦଶଇନ୍ଦୁ ପଦ ନହେ[୪] ରହି
ଦିଅ ହୃଦରେ, ତୋ ଏ ପାଦ ସ୍ଥୁଳ କମଳ
ଦେଖିଂ ସଲ୍ଲଜିତ ମତ୍ତ ରାଜହଂସୀ ରହିବେ ମାନସର କୂଳ ।୧୮।

୧. ବାରମ୍ବାର ନିଆଁରେ ପୋଡ଼ା ଯାଇଥିବା ଶୁଦ୍ଧ ସୁନାରଂଗର କଦଳୀ
୨. ପାଠାନ୍ତର : ଯୁଗଳ ଉର, ଅର୍ଥ ଓଲଟ କଦଳୀ ବୃକ୍ଷ ପରି ଦୁଇ ଜଂଘ
୩. ଈଷତ ଲାଲପଦ୍ମପରି, ପାଠାନ୍ତର : ଚନ୍ଦ୍ର
୪. ନଖରେ, ୫. ପାଠାନ୍ତର : ଦେଅ ହୃଦେ ଗୋ, ତୋର ପାଦତଳ କମଳ, ଦେଖି ଗମନ ସଲଜ୍ଜ ରାଜହଂସୀ ମିଳିବେ ମାନ ସରୋବର ।



ଧାତା ରଚନା ଏ ପ୍ରତକ୍ଷେ ଜଗତ ଧୀରେ ଯୋଗୀଜନେ ଧାଇଲେ
ଧରଣୀ ଆଦି ତ୍ରିଅପୁର[1] ସୁଜନେ ଧାନ ବୃତାନ୍ତେ ନିର୍ବାଣିଲେ[2]
ଧର୍ଯ୍ୟତର ଗୋ, ଛେଦିବାକୁ ତୁ ଯେ କୁଠାର
ଧଁସି ହୋଇଲାନି ଆପଣା ଗୋଚର ରପ ଦେଖିଁ କୁଶକେତୁର[3] ।୧୯।

୧. ତ୍ରିଅପୁର : ତ୍ରିପୁର-ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ,
ପାଠାନ୍ତର : ଧାତା ରଚନା ଏ ପ୍ରତ୍ୟକ୍ଷେ ଜଗତ ଜାଣି ଯୋଗୀ ଜନେ ଜିଣିଲେ
ଧରଣୀ ଆଦି ତ୍ରୟପୁର ସର୍ଜନା ଜିଣି ତୋ ରୂପ ନିର୍ମାଣିଲେ ।
୨. ନିର୍ମାଣ କରିବା, ୩. ବ୍ରହ୍ମା



ନିରନ୍ତରେଂ ଧାତା ନିଜ[1] କର୍ମ ତେଜିଂ ନାରୀ ଜଣୁ ଜଣ ବଳାଇଂ
ନିର୍ମାଣ କଲା କୁଶଳ କରିଂ ତୋତେ ନିବାଡ଼ିଂ ଅଛି ଦୁଖ ପାଇଂ
ନବ ପଞ୍ଚ ଗୋ[2], ଲୋକେ ତାର ନାମ ବିଦିତ
ନାରୀ ଶିରୋମଣି ରୁପେ ସମ ନାହିଁ ଗୋପପୁରେଂ କଲା ଉଦିତ[3] ।୨୦।

୧. ପାଠାନ୍ତର : ନିରନ୍ତରେ ଧାତା ନିତ୍ୟକର୍ମ ତେଜି ନାରୀ ଜଣେ ଜଣେ ବଳାଇ,
ନିର୍ମାଣ କଲା ଅନେକ ମତେ ତୋତେ ନିଶି ଦିବସେ ଦୁଃଖ ପାଇ
୨. ଚଉଦ (୯+୫) ଭୁବନରେ
୩. ପାଠାନ୍ତର : ନାରୀ ଶିରୋମଣି ଗୁଣେ ସମସରି ଗୋପପୁରେ କଲା ବିଦିତ ।



ପଞ୍ଚଦହ ହେମ ପାରାସରେ[୧] ମିଶି ପିସି[୨] ତୋ ପିଣ୍ଡ ନିର୍ମାଣିଲା[୩]
ପରମ ଖାରେ[୪] ଖରାଇ[୫] ସୁଧାଦେଇ ପ୍ରମତ[୬] ଘେନି ରସାଣିଲା
ପରସନେ ଗୋ, ବଦନ ସେବିଁ ତୋ ମଦନ
ପଞ୍ଚଶାୟକ ତୋହୋ ତହୁଁ ନେଇଂଣ ଡିଅପୁରେ ବିଜେ ରାଇନ[୭] ।୨୧।

୧. ପାରଦ, ୨. ପେଷି, ଚୂନାକରି
୩. ପାଠାନ୍ତର : ପଞ୍ଚ ଦହ ହେମ ପରାସରେ ମିଶି ପେଷି ତୋ ପିଣ୍ଡ ନିର୍ମାଣିଛା
୪. ପାଠାନ୍ତର : ପ୍ରମୋଦ ଖାରେ ୫. ସିଦ୍ଧକରି ୬. ଆଗ୍ରହ, ନିଷ୍ଠାର ସହିତ
୭. ଏଠାରେ ନାୟିକାକୁ କନ୍ଦର୍ପର ପଞ୍ଚବାଣ ସହିତ ତୁଳନା କରାଯାଇଛି



ଫୁଲାରବିନ୍ଦ ତୋ ତନୁ ପରିମଳ ଫୁଟିଣ ଦୁକୂଳ ବିକାଶି
ଫାନ୍ଦେ ପଡ଼ିଲିଁ ଫେଡ଼ିଦେଅ[୧] ସୁମୁଖି ସୁଗତି ମତ୍ତ ରାଜହଂସୀ
ଫରଳ[୨] ଦିଶୁ ଗୋ, ମୁଖଚନ୍ଦ୍ର ତୋ ଉର୍ଦ୍ଧ୍ୱକର
ଫିଟୁ ଏ କାମ ଅନ୍ଧକାର ଆହ୍ଲାଦ ଲଭଇଁ ମୁଁ ସୁଖ ସାଗର[୩] ।୨୨।

୧. ଦିଅ, ୨. ଫର୍ଚ୍ଚା, ତୋଫା, ଉଜ୍ଜ୍ୱଳ
୩. ପାଠାନ୍ତାର: ଫିଟୁ ଏ କାମ ଆଛନ୍ଦ ଅନ୍ଧକାର
ଲଭଇ ତୋ ସୁଖ ସାଗର, ... ଆହ୍ଲାଦ ଲଭଇଁ ସୁମୁଖ ସାଗର ।



ବିଧୁବଦନୀ ବାମାମଣି ବିମନ ବଇରି ବଢ଼ା ନାହିଁ ସହି[୧]
ବାଁକ ବିକାର[୨] ତୋ ଚାହିଁବାର ରଙ୍ଗେ ବିକି ହୋଇଲିଁ ତୋହ ତହିଁ
ବାମା କେତେ ଗୋ, ତାପ ରୋଷ ପାଉଂ ମନରେଂ[୩]
ବେଭାରେ[୪] ଚିତ ବନ୍ଦିକରି ରଖିଲୁ[୫] ଏ ତୋର ନୟନ କୋଣରେ[୫] ।୨୩।

୧. ପାଠାନ୍ତର : ବଇରି ନ ବଢ଼ାଅ ସହି ୨. ପାଠାନ୍ତର : ବଙ୍କିମ ବିକାର
୩. ପାଠାନ୍ତର : କେତେ ଅଭିମାନ ମନରେ ୪. ବ୍ୟବହାର, ଆଚରଣ
୫. ପାଠାନ୍ତର : ଏ ତୋହର ଗୁଣ ସାଗରେ ।



ଭାବ ଦେଇଂ ଭମରା ମନ କିଣିଲୁ ଭଲା ମାଳତୀ ଫୁଲ ସହିଂ[୧]
ଭାବ ଭଗିଂ ମୁଖ[୨] ମୁଦିଲୁ ସୁମୁଖୀ ଭାବେ ଭଜିଲା ମୋର ଦେହି
ଭିନ କରିଂଛୁ, ଭରାନ୍ତି[୩] ଛାର ଛାଡୁ ନାହିଁ
ଭୂଇଂ ଛୁଇଂ ଜନେ ହସ୍ତ ଭରଅଛିଂ[୪] ତୋ ବିନୁ ମନେ ଆନ ନାହିଁ ।୨୪।

ପାଠାନ୍ତର : ୧. ଭାବଦେଇ ଭୃଙ୍ଗ ମନ ବନ୍ଦୀ କଲୁ ଭଲା ମାଳତୀ ଫୁଲ ସହି,
ଅର୍ଥ : ମାଳତୀ ଫୁଲ ଓ ଭ୍ରମର ବିପରୀତ ରତିର ପ୍ରତୀକ
୨. ପାଠାନ୍ତର : ଗୁଣେ ୩. ଭରାନ୍ତି, ଭ୍ରାନ୍ତି ୪. ପ୍ରମାଣ କରୁଛି ।



ମହିମଣ୍ଡନୀ ମାଧବର ବିନୟେ ମନ କୁମୁଦ ମୁକୁଳିଲା[୧]
ମଳୟାନିଳ ଦରଶନେ[୨] କି ଆଶେ ରସାଳ ତର ବକୁଳିଲା[୩]
(ମନ) ଅନୁରାଗେଣ, ଚନ୍ଦ୍ର ମାନ-ଘନ ଛାଡିଲା[୪]
ମୃଦୁ ଲାବଣ୍ୟ ଅନୁରାଗ ବଚନ ପବନ ଘାତେ ଉଡାଇଲା ।୨୫।

୧. ବିକସିଲା ୨. ପାଠାନ୍ତର : ସ୍ୱରଶରେ,
୩. ପାଠାନ୍ତର : ମୁକୁଳିଲା ୪. ପାଠାନ୍ତର : ମାନ ଘନ ଯେ,
ଅନୁରାଗ ଚନ୍ଦ୍ର ଛାଡ଼ିଲା



୧. ପାଠାନ୍ତର : ଯୁବାଜନମଣି ଜାଣୁ ଶିରୋମଣି ଜଗୁ ଜାଣୁ ଜାଣୁ ସିହାଣ
ଯତନେ ପାଦ ତଳେ ପଡ଼ି ବିନୟ ଜଗତ ଜନର ପରାଣ
ଯୁବା-ସାମଗ୍ରୀ, ଜାଣି ତା ପାଦ ଘୁଞ୍ଚାଇଲା,
ଯଶୋଦାନନ୍ଦନ ଜୀବର ଜୀବନ ତେଣୁ ତ ମାନ ସଞ୍ଚାଇଲା ।

ଅର୍ଥ : ରେ ଚତୁରି, ଜାଣୁ ଶିରୋମଣି, ତୁ ଯୁବକମାନଙ୍କର ମନ ଓ ଗୁଣକୁ ବେଶ୍ ଭଲ ଭାବରେ ଜାଣୁ

୨. ପଦ୍ମପାଦ ୩. ଦୂର କରିବା ବା ମୋଚନ କରିବା

ଯୁବା-ଜନ-ମନ ଜାଣୁ-ଶିରୋମଣି ଜାତି ଜାଣୁ ଜଣ ସୁଜାଣ[୧]
ଯତନେ ଜଳଜ- ପାଦ[୨] ଧରନ୍ତେଣ ଜଗତଜନଙ୍କ ପରାଣ
ଯୁବା ସାମନ୍ତା, ଯତନେ ପାଦ ଘୁଞ୍ଚାଇଲା
ଯଶୋଦାନନ୍ଦନ ଜୀବର ଜୀବନ ଯେଣୁ ତା ମାନ ମୁଞ୍ଚାଇଲା[୩] ।୨୬।



ରବି-ନଳିନୀ  ଚୁମ୍ବକ-ଲୋହ ଶଶି- ସିନ୍ଧୁ ସମ୍ଭେଟେ ଉଛୁଳିଲା
ରମଣିମଣି ଭାବ ଅନୁରାଗେଣ ରସ ଚନ୍ଦ୍ରମା ଉଦେକଲା
ରସେଁ ରୋମାଞ୍ଚ, ରଙ୍ଗେ ତା ଅଙ୍ଗ ମୁକୁଳିଲା[୧]
ରତି ଲାଳସେ ହିଆ ଚା ଚମକିଲା କଣ୍ଠରୁ ଦ୍ରବଣ ଶୁଖିଲା[୨] ।୨୭।

୧. ସଂଯୋଗ, ମିଳନପାଇଁ ଉଲ୍ଲସିତ ହେଲା, ୨. ତଂଟି ଶୁଖିଯିବା ।
ପାଠାନ୍ତର : ରଙ୍ଗେ ତା ତନୁ ପୁଲକିଲା, ରତି  ଲାଳସେ ହୃଦୟେ
ଦମକିଣ କଣ୍ଠର ଦ୍ରବଣ ଶୁଖିଲା ।



ଲୋଭ ଲାଳସେ ସୁଧାକର ଆନନୀ ଲକ୍ଷେ ଅନୁରାଗେ ଭିଡ଼ିଲା
ଲାବଣ୍ୟ ମ୍ରକତ[୧] ମହୀରହ ପରେ କଣୟ[୨] ଲତା କି ଜଡ଼ିଲା
ଲାବଣ୍ୟ ରାଶି ଯେ, ଭାଷେ ଅମିୟ ମୃଦୁବାଣୀ
ଲତା ଭିତରେ କି ଅଣ୍ଡିର କୋକିଳ ରତୁକାଳେ କରେ ସୁବାଣୀ ।୨୮।

ପାଠାନ୍ତର :
ଲାବଣ୍ୟ ମ୍ରକତ ତର ଉପରେ ତା କନକ ଲତା କି ଜଡିଲା
ଲାବଣ୍ୟ, କହେ ଅମୀୟ ମୃଦୁବାଣୀ । ୧. ମର୍କତ ୨. ସୁନା



ବଲହ[୧] ବିମ୍ବାଧର ଧରଂ ସୁମୁଖୀ ଚଳିତ ଅଧର ଯୁଗଳ
ବିପୁଳ ପୁଲକ ବେପଥୁ ଜୃମ୍ଭଣ[୨] କାମ ଅଙ୍ଗ ତାର ତରଳ
ବାମାମଣି ଯେ, ବିନୟ ଜଳରେ ବୁଡ଼ିଲା
ବୋଲେ ବିଧୁମୁଖୀ ବଙ୍କିମେ ଅନାଅ ଦେଖି ଲଭେ ପଦ ନିର୍ବାଣ[୩] ।୨୯।

୧. ବଲ୍ଲଭ, ସ୍ୱାମୀ
ପାଠାନ୍ତର :
ବିପୁଳ ପୁଲକ ବେପଥୁ ଜୃମ୍ଭଣ ଭୟେ କାମ ହୁଏ କାତର ।
ବନିତାମଣି, ଅତ୍ୟନ୍ତ ସାନନ୍ଦେ ରସିଣ
ବୋଲେ ବିଧୁମୁଖୀ ବଂକିମେ ଅନାଇ ଖଞ୍ଜନ ଗଞ୍ଜନ ନୟନ
୨. ହାଇ, ୩. ମୋକ୍ଷ, ଆନନ୍ଦର ଚରମ ଅବସ୍ଥା



୧. ପାଠାନ୍ତର : ସାଗରେ ତ୍ରିଶୂଳୀ ଶତେବୋର ଝାଶି ଏ ବର ମାଗିବି କେଶବୀ
ଶେଷ ନାଗର ସହସ୍ରେ ମୁଖ ଆଣି ଏ ତୋର ବଦନ ଚୁମ୍ବିବି
ସହସ୍ର ଭୁଜ, ହୋଇ ତୋର ଅଙ୍ଗ ଭିଡ଼ିବି
ସହସ୍ର ଲୋଚନ ଶକ୍ର ତ ହୁଆସି ତୋତେ ଚାହିଁ ଦୁଖ ଏଡ଼ିବି ।

ସାଗରେ ଶତବାର ଝାସି ଏ ବର ମାଗିବି ତ୍ରିଶୂଳୀଙ୍କି ସେବି
ଶେଷ ନାଗର ସହସ୍ରେ ଫଣା ନେଇଂ ତୋର ପଦ୍ମମୁଖ ଚୁମ୍ବିବି
ସହସ୍ର ବାହୁ ଯେ, ହୋଇଣ ତୋ ତନୁ ଭିଡ଼ିବି
ସହସ୍ର ନୟନ ଶକ୍ର ତହୁଁ ଆଣି ତୋଏ ଚାହିଁ ଦୁଖ ଏଡିବିଂ ।୩୦।



ଶ୍ରୀଧର ସାଙ୍ଗେ ଶଶିମୁଖୀ ଶୃଙ୍ଗାର ଭଏ କାମ ହୋଏ କାତର
ଶିରେ ଶିରେ ଭୁଜ ଭିଡ଼ି ଭୁଜେ ବେନି ବାଗି ତ ନୋହେ କେ ଶଯ୍ୟାର
ଷାଠିଏ ଚାରି[୧], ବନ୍ଧର ବିବିଧ ପ୍ରକାର
ଶାନ୍ତି ନୋହି ରାମା ବିପରୀତ କଲା[୨] ଧନ୍ୟ ଅନୁରାଗ ତାହାର ।୩୧ ।

୧. ପାଠାନ୍ତର : ଷଷ୍ଟି ଚାରି ଯେ, ଷାଠିଏ + ଚାରି = ଚଉଷଠୀ
୨. ବିପରୀତ ରତି : ଓଲଟ ରତି ।



ସମ୍ଭାଷଣ ଶୁଣି ଶ୍ରୀହରି ଆପଣେ[୧] ସରସ ସେନେହ ବଳିଲା
ଶ୍ରୀଭୁଜେ ଧରି କୋଳକୁ ଆକ୍ରସନ୍ତେ ସୋଭାବେ[୨] ନୀବି ଉଶ୍ୱସିଲା
ତରୁଣୀ ମଣି, ସାତ୍ତ୍ୱିକ ବାଧିଲା ତରୁଣୀ
ଶ୍ରୀଫଳ କୁଚେଂ ପଦ୍ମକର ନିବେଶିଁ ଶଶିଚାଳି କରେ[୩] ରମଣୀ[୪] ।୩୨।

୧. ପାଠାନ୍ତର : ସାନନ୍ଦ ୨. ସ୍ୱଭାବତଃ
୩. ଶଶିଚାଳି : ଚନ୍ଦ୍ରଚାଳନା
୪. ପାଠାନ୍ତର : ସାତ୍ୱିକରେ ଯେ, ଚେରେଷ୍ଟା ହାଗିଲା ସିହାଣୀ ,
ଶାଫଳ କୁଚ ପଦ୍ମକରେ ଚାପିଣ ଶଶିଚାଳି କରେ ରମଣୀ ।



ହରିଲେ ହରି ମଦନ- ରସ ଶ୍ରମ ହରିଣ- ନୟନୀ ଯୁବତୀ
ହରି ଅଧରୁଂ ସୁଧା ପାନ କରି ସେ ରାହିଂ[1] ହୋଇଲେ ତିରୁପୁତି[2]
ହସିବାକୁ ହିଂ, ଶକତି ନାହିଂତ କାହାର
ହୃଦୟ ଚାହିଂ ସ୍ତମ୍ଭୀଭୂତ ହୋଇଲେ କରରହ- ଘାତ ଶରୀର ।୩୩।

୧ମ ଧାଡି : ହରିଲେ ପ୍ରଭୁର ମଦନ ଆରତ ହରିଣ ନୟନ ଯୁବତୀ ।
୪ର୍ଥ ଧାଡି : ଶରୀର୍ଯ୍ୟ ହୋଇବ କାହାର
୫ମ ଧାଡି : ହୃଦକୁ ଚାହିଁ ସ୍ତମ୍ଭୀଭୂତ ହୋଇଲେ ଲେଖ ରେଖାପାତ ଉରର ॥
୧. ରାଧା, ୨. ତୃପତି, ତୃପ୍ତି ସନ୍ତୋଷ



କ୍ଷାଇଲ ପ୍ରଭୁ କ୍ଷଡ଼ାଇଲେ ବିମନ କ୍ଷାଇଲେ ମୃଗମଦ ଯନ୍ତ
କ୍ଷନ୍ଦିଲେ ରାଧାର କବରୀ ଭାର ସେ କ୍ଷମା ସାଗର ପଦ୍ମନେତ୍ର
କ୍ଷାଡ଼ିବାକୁ ହିଂ, କଷ୍ଟେ କଷ୍ଟେ ହୋଏ ବିଚାର
କ୍ଷୁଦ୍ରବୁଦ୍ଧି ଦାସ ନାରାୟଣ ବୋଲେ ଅନୁଭବର ଯେ ବିଚାର ।୩୪।

କ୍ଷଇଲ ହରି କ୍ଷଡ଼ାଇଲେ ବିରହ କ୍ଷାଇଲେ କୁଚେ ମୃଗମଦ
କ୍ଷନ୍ଦିଲେ ସୁସଂଚ କବେରୀ କୁସୁମେ କ୍ଷମାସାଗର ବିଶ୍ୱପଦ
କ୍ଷାଡ଼ିବାକୁ ସେ, କ୍ଷଣେ ମନ ନାହିଁ କାହାର
କ୍ଷୁଦ୍ର ବୁଦ୍ଧି କହେ ଦାସ ନାରାୟଣ ଅନୁଭବର ଏ ବିଚାର[1] ।୩୪।

କ୍ଷମାସାଗର, କ୍ଷଣେ ଓ କ୍ଷୁଦ୍ରବୁଦ୍ଧି ଶବ୍ଦ ବ୍ୟତୀତ ଅନ୍ୟ ଅକ୍ଷରଯୁକ୍ତ ଶବ୍ଦଗୁଡ଼ିକ
ଏହିପରି ପଢ଼ାଯିବ-ଛଇଳ, ଛାଉଲେ, ଛନ୍ଦିଲେ, ଛାଡ଼ିବାକୁ ।
୧. ପ୍ରକୃତ ଅନୁଭବୀ ହିଁ ଏ କଥା ବୁଝିପାରିବ , ଅର୍ଥାତ୍ ଏହା ଅନୁଭବର କଥା



ରାଗ : କାମୋଦୀ
ଛଳ ପ୍ରାନ୍ତଯମକ

କଉଁ ଆରତ- ନର କଳି - କଲୁଷ-ଦର[୧] ଲଭି ଚିତେ ବିଚାର କରେ
କୃଷ୍ଣ ପଦ୍ମଚରଣ ବିନୁ ଅନ୍ୟ ଶରଣ ଅଛି କେ ଚଉଦ ଲୋକରେ ହେ
ଦୀନବନ୍ଧୁ
କେତେ ମୁ ପାଉଛି କଦନ[୨]
କରିବ କେ ଯେହା ଛେଦନ
କୃପା ସାଗର ହରି ଅମୃତ ନିଶ୍ଚେ ପାରି କଳି ମୁଁ ଏଣୁ ନିବେଦନ ହେ
ଦୀନବନ୍ଧୁ ।୦।

୧. କଳିଜନିତ ପାପର ଭୟ, ୨. କଦର୍ଥନା, କଷ୍ଟ, କ୍ଲେଶ



ଖର୍ବ- ସ୍ୱରୂପଧାରୀ[୧] ଖଳ କେ ମୋହ ପରି ନାହିଁ ଅବନୀ ମଣ୍ଡଳରେ
ଖର-କର-ମଣ୍ଡଳ- ମଣ୍ଡନ[୨] ମୁଁ ଆକୁଳ ହୋଇ ଭାସେ ସ୍ୱେଦ ଜଳରେ ହେ
ଦୀନବନ୍ଧୁ
ଖରେ[୩] ଦେଲେ ଭକ୍ତି ନାବକୁ
ଖଟାଇ ରଖିବି ଜୀବକୁ
ଖଣ୍ଡ-ପରଶୁ ହିତ- କାରୀ ହୋଇ ମୋ ହିତ ଖଣ୍ଡ ଶମନ[୪] ପ୍ରାଭବକୁ ହେ
ଦୀନବନ୍ଧୁ ।୨।

୧- ବାମନ ରୂପ
୨. ସଂସାରର ଦୁଷ୍ଟଲୋକମାନଙ୍କ ମଧ୍ୟରେ ମୁଁ ଶ୍ରେଷ୍ଠ
୩. ଶୀଘ୍ର, ୪. ଯମ, ୫. ପରାଭବ, ଦଣ୍ଡ ।



ଗୋପେ କୋପେ- ବର[୧] ବରଷୁ ନୀର ଗିରି ଧରି ଦୁଃଖୁ ତାରିଲ
ଗରିଷ୍ଠ କଷ୍ଟ ଭାର ଗରତାକୁ ମୋହର ହୋଇବା ଦେଖି କି ଡରିଲ ହେ
ଦୀନବନ୍ଧୁ
ଶୁଣୁଛି ବସି ସୁମନରେ
ଗଞ୍ଜଣା ପାଇ ସଦନରେ
ଗର-ଧର-ଅନ୍ତକ-ଧ୍ଵଜ ମୋ ଗୁର ଡାକ ଯେଣୁ ନ ଶୁଣୁଛ କର୍ଣ୍ଣରେ ହେ
ଦୀନବନ୍ଧୁ ୩।

୧. ଇନ୍ଦ୍ର, ୨. ଅଧିକ ଓଜନିଆ
୩. ଗର (ବିଷ)କୁ ଧାରଣ କରିଥାଏ ଯେ ଗରଧର ଅର୍ଥାତ୍ ସର୍ପ,
ସାପର ଅନ୍ତକ (ଶତ୍ରୁ) ଗରୁଡ ଧ୍ଵଜରେ ଯାହାର ସେ ବିଷ୍ଣୁ ।
୪. କାତର ପ୍ରାର୍ଥନା



ଘୋଟିବାର ସନ୍ତାପ ତମ[୧] ହୋଇ ଅମାପ ମାର୍ଗ ଅମାର୍ଗ ନୋହେ ବାରି
ଘନଶ୍ୟାମ କରଣା ନ କର ମୋତେଂ ଊଣା ଯେ ଦୁଃଖ ପକାଅ ନିବାରି ହେ
ଦୀନବନ୍ଧୁ
ଘେନି ମୋହର ବିନତି କି
ଘନେ[୨] ସୁପ୍ରେମ ସମ୍ମତି କି
ଘନ ଘନ ଅନୁଜ[୩] ଦେଲେ ନ କରି ବ୍ୟାଜ[୪] ଲଭିବି କି ଭବ ଭୀତିକି ହେ
ଦୀନବନ୍ଧୁ ।୪।

୧- ଦୁଃଖ, ଅଂଧାର, ୨. ନିବିଡ ଭାବରେ
୩. ଇନ୍ଦ୍ର ଅନୁଜ (ସାନଭାଇ) ବିଷ୍ଣୁ ।
ତେଣୁ ତାଂକୁ ଉପେନ୍ଦ୍ର କୁହାଯାଏ । ୪. ଛଳନା
୫. ସଂସାର



ନାହିଁ କାହିଁ ଭରସା ତୁମ୍ଭଙ୍କୁ ପ୍ରତି ଆଶା କରିଛି ଆହେ ନରହରି
ନିଷ୍ଠୁର ହୋଇ ମାୟା- ଧର କିମ୍ପା ନିର୍ଦ୍ଦୟା କରୁଛ ଦୁର୍ଦ୍ଦଶା ନ ହରି ହେ
ଦୀନବନ୍ଧୁ
ନିରେଖି[୧] ଜନରେ ମୋଦ[୨]କୁ
ନକରି ଦେଉଛ ଖେଦ[୩]କୁ
ନିଶାକର- ଆନନ ନିଖିଳେ କେ ପାବନ କରିବ ନାଶି ବିପଦକୁ ହେ
ଦୀନବନ୍ଧୁ ।୫।

୧- ରକ୍ଷାକର୍ତ୍ତା ନଥିବା, ୨. ଆନନ୍ଦ, ୩. ଦୁଃଖ



ଚିନ୍ତି ସୁର-ସୁତର[୧] ଚରିତ ଚକ୍ରଧର ଚିତ ହୋଏ ଅତି ଅଥିର
ଚପଳେ ଘେନି ଭାଷ[୨] ଚରଣେ କରି ଦାସ ସେ ତାପୁ କର ମୋତେ ଥିର ହେ
ଦୀନବନ୍ଧୁ
ଚିନ୍ତାବ୍ଧି[୩] ମୋତେ ଉଦ୍ଧର
ଚାଣୁରାରି[୪] ଦୋଷ ନ ଧର
ଚଞ୍ଚଳାପତି ତୋଷ ଚିତେ ହୋଇ କୁଳିଶ ନାଶ କଳୁଷ ମହୀଧର[୫] ହେ
ଦୀନବନ୍ଧୁ ।୬।

୧. ଯମ, ୨. ମିନତି, ଜଣାଣ, ୩. ଚିନ୍ତାରୂପକ ସମୁଦ୍ର, ୪. କଂସର ମଲ୍ଲ ଚାଣୁରର ଶତ୍ରୁ, ୫. ପର୍ବତ ପରି ପାପପାଇଁ ବଜ୍ର ।



ଛାଡ଼ିଲିନି ସକଳ    ଆଶା ହେ ଆଦିମୂଳ    ଛାର କରି ସର୍ବ ବିଷୟ[1]
ଛଦ୍ମ ନୋହେ ମୋ ଗିର[2]    ଅନ୍ତର୍ଯାମୀ ବିଚାର    କିଛି ନାହିଁ ସଂଶୟ ହେ
ଦୀନବନ୍ଧୁ
ଛଳେ ସ୍ତମ୍ଭ ମଧ୍ୟୁ ବାହାରି
ଛଟକେ ହିରନ୍ୟ ସଂହାରି
ଛତ୍ରପତି[3] ଅମରେ    କଲ ପ୍ରହଲାଦ[4]ରେ    ଯେବେ ନ ଶୁଣ ମୋ ଗୁହାରି ହେ
ଦୀନବନ୍ଧୁ ।୭।

୧. ସାଂସାରିକ ଜଂଜାଳ ବା ବିଷୟବାସନା,
୨. ବଚନ, କଥା ୩. ରାଜା ୪. ପ୍ରହ୍ଲାଦ ।



ଜାଣିଛି ଆର୍ତତ୍ରାଣ    ତୁମ୍ଭେ ବୋଲି ଜଣାଣ    କରୁଛି ଯେଣୁ ନିରନ୍ତରେ
ଯାହା ନାମକୁ ଜପି    ଥରେ ଆଜନ୍ମ ସୁଖୀ    ମହାମହା ସଂକଟୁ ତରେ[1] ହେ
ଦୀନବନ୍ଧୁ
ଜାଗ୍ରତେ ଭଜି ସନମାନେ[2]
ଜୀବନ ମୁକ୍ତ ଯୋଗୀଜନେ
ଜଳଜ-ପଦ[3] ଭାବି    ହେଲି ମୁ ପରାଭବୀ[4]    କେତେ ବଞ୍ଚିବି ଅଭିମାନେ ହେ
ଦୀନବନ୍ଧୁ ।୮।

୧. ମୁକ୍ତି ପାଏ, ୨. ସମ୍ମାନର ସହିତ, ୩. ପଦ୍ମପାଦ, ୪. ଦୁଃଖୀ



ଝରଇ ଅବିରତେ ନୟନୁ ନୀର ଯେତେ କେବେ ହେଁ ନୁହଇ ନିବାରି
ଝଗଡ଼େ[1] ପଡ଼ି ବଣା ହେଲି ଯେଣୁ ଠିକଣା ନାହିଁ ମୋହର ଦାନବାରି[2]ହେ
ଦୀନବନ୍ଧୁ
ଝୁରଅଛି ନିଶି ଦିବାରେ
ଝିମଣ୍ଟେ[3] ସାହା ନୁହ ବାରେ
ଝାତିକାରେ[4] କୃପାରେ ଝସାଙ୍କିତ ପୟରେ[5] ଯେଣୁ ନ ରଖିଲ ସେବାରେ ହେ
ଦୀନବନ୍ଧୁ ।୯।

୧. ଦ୍ୱନ୍ଦ୍ୱ ୨. ଅସୁର ବିନାଶକ
୩. ଟିକିଏ ମାତ୍ର. ୪. ଆଖି ମିଟିକାରେ
୫. ମାଛ ଚିହ୍ନ ଥିବା ପାଦ, ବିଷ୍ଣୁଙ୍କପାଦ ।



ନାହିଁଟି ଆନେ ଆଶା କେହି ମୋହର ରସା- ମଣ୍ଡନ[1] ହେ ତୁମ୍ଭ ବାହାରେ[2]
ନନ୍ଦ ନନ୍ଦନ ଦାଉଁ ଯେତେ ସହୁଁଚି ଆଉଁ ତାହା ମୁ କହିବି କାହାରେ ହେ
ଦୀନବନ୍ଧୁ
ନଷ୍ଟ ନ କଲେ ମୋ କଷଣ
ନୀଳଶଇଳ-ବିଭୂଷଣ
ନିରେଖି ହେଲେ ହତ ହେବ ନିଶ୍ଚେ ପତିତ- ପାବନ ବାନାକୁ ଦୂଷଣ ହେ
ଦୀନବନ୍ଧୁ ।୧୦।

୧. ପୃଥିବୀର ଅଳଂକାର, ଭଗବାନ, ୨. ବ୍ୟତୀତ



ଟଳଇ[୧] ନାହିଁ ଚିତ    ଅଧର୍ମରୁ କିଞ୍ଚିତ    କେମନ୍ତେ ଭକ୍ତ ହେବି ପାରି
ଟଳ ଟଳ[୨] ହୃଦୟ    ଅତିଶୟ ସଂଶୟ    ହୋଉଛି ମୁ ବୁଝି ନ ପାରି ହେ
ଦୀନବନ୍ଧୁ
ଟେକଇ[୩] ମନ ପ୍ରଶଂସାରେ
ଟେକ[୪]ନ ଛାଡ଼ଇ ହିଂସାରେ
ଟେକ[୫] ମହିମା ମେର    ଯେ ଶୋକ ଜଳଧିର    ତାରିବ କେ ଆଉ ସଂସାରେ ହେ
ଦୀନବନ୍ଧୁ ।୧୧।

୧. ବିଚଳିତ, ୨. ଅସ୍ଥିର, ୩. ଉଚକିତ ଭାବ, ୪. ଗର୍ବ
୫. ଉପରକୁ ଉଠାଅ, ଉଦ୍ଧାରକର



ଠାକୁର ଦୟାକରି    କରୀ[୧] ସଂକଟୁ ତାରି    ଚକ୍ରେ ନକ୍ର[୨]କୁ ବିନାଶିଲ
ଠାକୁରାଣୀ ଯେ ଜାଣି    ନାହାନ୍ତି ତାହା ପୁଣି    ରଖିଲି ବୋଲିଣ ଭାଷିଲ ହେ
ଦୀନବନ୍ଧୁ
ଠିକକେ[୩] କର ପ୍ରଭୁପଣ
ଠିକ[୪] ଦୟାଳୁରେ ଆପଣ
ଠିକଣା ନାହିଁ ମୋର    ବୋଲି ମୁରଲିଧର    କରଣାରେ ହେଲ କୃପଣ ହେ
ଦୀନବନ୍ଧୁ ।୧୨।

୧. ହାତୀ, ୨. କୁମ୍ଭୀର ୩. ଇଚ୍ଛା ଅନୁସାରେ ୪. ଶିଖର, ଶ୍ରେଷ୍ଠ



ଡକାଇତ ପରିରେ[୧]　ଭ୍ରମୁଛି ବିଷୟରେ　କିପରି ଜାଣିବି ଭଗତି
ଡକା ମୁଁ ପକାଇଲେ　କିମ୍ବା ଶୁଣିବ ଭଲେ　ନିଶ୍ଚେ ଜାଣିଲି ନାହିଁ ଗତି ହେ
ଦୀନବନ୍ଧୁ
ଡାକିଲେ ଶୁଣ ଯଦୁପତି
ଡାକିଧର[୨] ଏଣୁ ଜପନ୍ତି
ଡାକିନୀ[୩] ବକୀଠାର　ବଡ଼ ଦ୍ରୋହୀ[୪] ହେବାର ହରନାହିଁ ମୋର ବିପତି ହେ
ଦୀନବନ୍ଧୁ ।୧୩।

ଏଠାର ଆଦ୍ୟାନୁପ୍ରାସ

୧. ଭୟ ଦେଖାଇ ଅନ୍ୟର ଧନ ଲୁଣ୍ଠନ କାରି
୨. ଡମ୍ବରୁଧର, ଶିବ, ୩. ପୁତନା ରାକ୍ଷସୀ, ୪. ଶତ୍ରୁ



ଢଳ ଢଳ କାଳୀୟ-　ଶିର- ନର୍ତ୍ତକ[୧] ପୟ　ରରେ　ଦିନେ ମୁଁ ନ ଭଜିଲି
ଢଳି ଯାଉଁଛି ଜୀବ　ପାଇ ଭବ ପ୍ରାଭବ　ତେବେ କେବେ ହେଁ ନ ହେଜିଲି ହେ
ଦୀନବନ୍ଧୁ
ଢାଳେ[୨] ନ ଛାଡ଼ିଲି ଦମ୍ଭକୁ
ଢାଳି ନାମାମୃତ କୁମ୍ଭକୁ
ଢାଳେ ଖଡଗ-ଘାତ　ପରି ଦଣ୍ଡ ବହୁତ　ସହୁଛି କେ ଦେବ ଦୁମ୍ଭକୁ ହେ
ଦୀନବନ୍ଧୁ ।୧୪।

୧. କାଳୀୟ ନାଗର ଫଣାରେ ନାଚୁଥିବା ଶ୍ରୀକୃଷ୍ଣ
୨. ନିମିଷକ ପାଇଁ, ଥରେ ହେଲେ



ଅନବରତେ ଧନ  ଅର୍ଜନେ ଦେଇ ମନ  ଧର୍ମ ଅଧର୍ମ ନ ଜାଣଇଁ
ଅନଳରେ ପତଙ୍ଗ  ସ୍ନେହପରି କୁସଙ୍ଗ  ସଙ୍ଗକୁ ଚିତେ ମୁଁ ମଣଇଁ ହେ
ଦୀନବନ୍ଧୁ
ଅଧଇର୍ଯ୍ୟ ଯେଣୁ ମନରେ
ଅଧର୍ମୀ ମୋହୋ ସମାନରେ
ଅର୍ଧ ଊର୍ଦ୍ଧ ମଧର[1] ଆହେ କମଳାବର  ନାହିଁ ଖୋଜିଲେ ଯେକ ନରେ ହେ
ଦୀନବନ୍ଧୁ ।୧୫।

୧ . ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଓ ତ୍ରିପୁର ଅର୍ଥାତ୍ ତିନିପୁର



ତମ[1]-ମସ୍ତକ-ହର  ନ କଲେ ପ୍ରତିକାର  ଅଛି କେ ଆନେ ମୋର ଗତି
ତମ[2] ଚିତୁ ନିବାର[3]  ଘେନି ବିନୟ ଗିର  ପାଦପଦ୍ମେ ଦେବ ଭଗତି ହେ
ଦୀନବନ୍ଧୁ
ତରକ ନାହିଁତ ମୋହର
ତରସ୍ତ ଭୟକୁ ସଂହର
ତରଣୀ- ସୁତା[4]- ତଟ - ବିହାରୀ[5] ମୋ ସଂକଟ  ବିନାଶି ମାନସେ ବିହର ହେ
ଦୀନବନ୍ଧୁ ।୧୬।

୧ . ରାହୁର ମଥା କାଟିଥିବା ୨ . ପାପ, ଅନ୍ଧକାର
୩. ନିବାରଣ କର, ଦୂରେଇ ଦିଅ ୪ . ଯମୁନା
୫ . ଯମୁନା କୂଳ ବିହାରୀ ଅର୍ଥାତ୍ କୃଷ୍ଣ



ଥୁଳ[1] ଏ ମୋ ବିପତି   ଦେଇ କିବା ଶ୍ରୀପତି   କରଣା ହୃଦରୁ ମୁଛୁଳ[2]
ଥୁଳଜଂଘ[3] ବଇରି   ନିଶ୍ଚୟେ ଅପସରି   ଡରିକି ପଛକୁ ଘୁଞ୍ଚିଲ ହେ
ଦୀନବନ୍ଧୁ
ଥରକୁ ଥର ବିଷାଦରେ
ଥରଇ ତନୁ ପ୍ରମାଦରେ
ଥର ବିଲୋମ-ପଦ[4] ଦେଖି ଗାଢ଼ ବିପଦ   ଶ୍ରୀଭୁଜୁ ଗଲେ କି ସେ ଦରେ[5] ହେ
ଦୀନବନ୍ଧୁ ।୧୭।

୧. ଅଧିକ, ବେଶି , ୨. ମୂର୍ଚ୍ଛିଲ ହରେଇ ଦେଲ
୩. ସ୍ଥୁଳଜଂଘ ନାମକ ରାକ୍ଷସ
୪. 'ଥର' ର ବିଲୋମ ରଥ, ରଥର ପଦ ଚକ୍ର
୫. ଭୟରେ



ଦମ୍ଭ ତେଜି ଭାଷୁଛି   ଆଜ୍ଞାକୁ କି ଆସୁଛି   ସତ କି ମିଥ୍ୟା ଘେନ ଚିତେ
ଦମ୍ଭ ନ କଲ ଯେଣୁ   ଅତି ଆରତ ତେଣୁ   ହୋଇ ରହିଛି ସଂକୋଚିତେ[1] ହେ
ଦୀନବନ୍ଧୁ
ଦାରୁଣ[2] ରୀତି କି ନ କର
ଦାରବ୍ରହ୍ମ କରୁଣା କର
ଦାର[3]କର ଦୁବକୁ   ଏଣୁ ଆଶା ତୁମ୍ଭଙ୍କୁ   କରିଛି ନିରାଶ ନ କର ହେ
ଦୀନବନ୍ଧୁ ।୧୮।

୧. ଉପାୟହୀନ, କିଂକର୍ତ୍ତବ୍ୟବିମୂଢ଼, ୨. ନିର୍ଦ୍ଦୟ
୩. ଅସ୍ତ୍ର, ଶର



ଧରାଇ କାରାପୁରେ ଭୋଜରାଜା[1] ବନ୍ଦିରେ ରଖିଲା ଜନନୀ ତାତଙ୍କୁ
ଧରାସୁତାଙ୍କୁ[2] ଧରି- ନେଲା ରାବଣ ହରି ଶମ୍ବରାସୁର ଯେ ସୁତଙ୍କୁ[3] ହେ
ଦୀନବନ୍ଧୁ
ଧରମେ ସେ ଯେ ନିସ୍ତରିଲେ
ଧରନ୍ତେ ନାମ କି ତରିଲେ
ଧରମପ୍ରଦ ମୋଦ[4] ବହି କିମ୍ବା ଦରଦ ହେବ ମୁଁ ଯେତେ ସୁମରିଲେ ହେ
ଦୀନବନ୍ଧୁ ।୧୯।

୧. କଂସ ୨. ସୀତା
୩. କନ୍ଦର୍ପଙ୍କୁ ଶମ୍ବରାସୁର ହରଣ କରିନେଲା ୪. ଆନନ୍ଦ



ନନ୍ଦକଧର[1] କୃପା ଯେବେ ନ କର କିମ୍ବା ତୁମ୍ଭେ ତ ଦୀନ-ପରାୟଣ
ନନ୍ଦନଙ୍କୁ ଆକୁଳ ହୋଇଣ ଅଜାମିଳ ଡାକିଲା ମାତ୍ରେ ନାରାୟଣ ହେ
ଦୀନବନ୍ଧୁ
ନରକାରିପର ତ୍ରାସକୁ[2]
ନରକାରି କରି ନାଶକୁ[3]
ନରଙ୍କକୁରୁ ପାର- କଲ ତାକୁ ଶ୍ରୀଧର ନିବାରି ଗରିଷ୍ଠ ଦୋଷକୁ ହେ
ଦୀନବନ୍ଧୁ ।୨୦।

୧. ନନ୍ଦକ ନାମକ ଖଣ୍ଡାକୁ ଯେ ଧରିଥାଏ : ବିଷ୍ଣୁ
୨. ନରକାସୁରକୁ ନିଧନ କରିଥିବା ଶିବଂକ ଶତ୍ରୁ
କି କନ୍ଦର୍ପର କାମ ତାପର ଭୟକୁ ୩. ନାରକାସୁର ନିଧନକାରୀ



ପରିତୋଷ[1] ନ କରି     କରଛ ଏତେ ସରି     କି ଦୋଷ ଦେଖିଣ ମୋହର
ପରିହର ଯେ ରୀତି     ତୁମ୍ଭକୁ ହେବ କୀର୍ତ୍ତି     ଜାଣି ମୋ ବିପତି ନ ହର ହେ
ଦୀନବନ୍ଧୁ
ପରମ ଆନନ୍ଦେ ଏଣିକି
ପରତେ କରି ମୁଁ ବାଣୀକି
ପରମାଦ ତୁ ହର   ବହନ ମୁରପର[2] ବନାଶି ମୋ ଦୁଖ ଶ୍ରେଣୀକି ହେ
ଦୀନବନ୍ଧୁ ।୨୧।

୧. ସନ୍ତୋଷ, ୨. ମୁର ନାମକ ଅସୁରର ହତ୍ୟାକାରୀ



୧. ପଦ୍ମ ୨. ଭ୍ରମର

ଫେଡ଼ି ନେତ୍ର ନୀରଜ[1]   ବିସ୍ତାରି ବେନି ଭୁଜ   ବିଜେ ରତ୍ନ ସିଂହାସନରେ
ଫେଡ଼ିବ ମୋ ବିପତି   ପ୍ରସନ୍ନରେ ଶ୍ରୀପତି   ବିଚାରି ଆନଂଦ ମନରେ ହେ
ଦୀନବନ୍ଧୁ
ଫୁଲହାର ଦେଖି ହୃଦରେ
ଫୁଲଇ ଅତି ପ୍ରମୋଦରେ
ଫୁଲଲିଟ[2] ମୋ ଚିତ   ଚୁମ୍ବିବା ଲୋଭେ ରତ   ନ ପାଇ ଭ୍ରମେ ବିଷାଦରେ ହେ
ଦୀନବନ୍ଧୁ ।୨୨।



ବନରେ ଗର୍ଭାଏଣି[୧]  ବ୍ୟାଧ ଜାଲରେ ପୁଣି  ପଡ଼ି ତୁମ୍ଭଙ୍କୁ ସୁମରିଲା
ବନମାଳୀ ତା ଜାଣି  ପେସନ୍ତେ ବଜ୍ରପାଣି[୨]  ତକ୍ଷଣେ ତା ଦୁଖ ସରିଲା ହେ
ଦୀନବନ୍ଧୁ
ବଳିଷ୍ଠ ମୋ କଷ୍ଟ ତହିଁକି
ବଳିଲା ମୁଁ ଜାଣୁ ନାହିଁକି
ବଳୀ-ଯଜ୍ଞ-ଭଞ୍ଜନ[୩]  ମୋ ବିଷୟେ ମଉଂନ  ନୋହିଲେ ହୋଉଂଛ କାହିଁକି
ହେ ଦୀନବନ୍ଧୁ ।୨୩।

୧. ଗର୍ଭବତୀ ମୃଗୁଣୀ ୨. ଈନ୍ଦ୍ର ୩. ବାମନାବତାରୀ ବିଷ୍ଣୁ ।



ଭାବନା କଲେ ଦୂରୁ  ସେ ଯେ ପାଣ୍ଡବ ଭାରୁ  ବିବସ୍ତ୍ର କରି ଦୁଶାସନ[୧]
ଭାବଗ୍ରାହୀ ତା ଜାଣି  ଦାନକଲ ସେକ୍ଷଣି  ଛପନ କୋଟି  ଯେ ବସନ ହେ
ଦୀନବନ୍ଧୁ
ଭରମ ହେଲ ମୋ ହିତରେ
ଭରସା ନୋହି କିଞ୍ଚିତରେ
ଭରତାଗ୍ରଜ[୨] ଯେବେ  ଦୟା ନ କର ଲବେ[୩]  ଯେତେ ଜଣାଇଲି ଆର୍ତ୍ତରେ ହେ
ଦୀନବନ୍ଧୁ ।୨୪।

୧. ଦୁଃଶାସନ ଦ୍ରୌପଦୀର ବସ୍ତ୍ରହରଣ କାଳରେ, ୨. ରାମ ୩. ଟିକିଏ, ଅଳପ



ଏଠାର ମଧ୍ୟ ଯମକ

ମନ ମୋ ନୋହେ ଥିର  ଥିର ବହନ କର   କରମହୀନ ଜନ ମୁହିଁ
ମୋଦରେ[1] ରାଧାପତି[2] ପତିତର ଭଗତି   ଗତିଦ[3] ଘେନିକର ତ୍ରାହି ହେ
ଦୀନବନ୍ଧୁ
ମୋହ ସନ୍ତାପ ଅଭିମାନ
ମାନସୁ କର ବିମୋଚନ
ମୁରଲି-  କର[4] କର  ଚରଣେ ପରିକର[5]   କର ଯୋଡ଼ି ମାଗୁଛି ଘେନ ହେ
ଦୀନବନ୍ଧୁ ।୨୫।

୧. ଆନଂଦରେ ୨. ଶ୍ରୀକୃଷ୍ଣ ୩. ମୁକ୍ତିଦାତା
୪. ଶ୍ରୀକୃଷ୍ଣ ୫. ସେବକ



ଯାବନ୍ତ ଦୋଷୁ ଖର[1]   ଖର-ନାଶନ[2] ତାରା- ତାରକ[3] ତୁମେ ପରା ହରି
ଯତ୍ନେ ନାଶ କ୍ଳିବିଷ[4] ବିଂଶନେତ୍ର[5] ବିନାଶ  ନାଶକରି ଦଣ୍ଡକୁ ହରି ହେ
ଦୀନବନ୍ଧୁ
ଯଦୁନନ୍ଦନ ଯେ ଅଯଶ
ଯଶ କାହାକୁ ହେବ ଭାଷ[6]
ଯାତନା ନାଶି ଦେବ  ସୁଭକ୍ତି ଭାବ ଭାବ-  ଗ୍ରାହୀ ହୋଇ ସନ୍ତୋଷ (ତୋଷ) ହେ
ଦୀନବନ୍ଧୁ ।୨୬।

୧. ଶୀଘ୍ର ୨. ଖର ରାକ୍ଷସର ବିନାଶ କର୍ତ୍ତା ୩. ତାରାର ସୁଖଦାତା ରାମଚନ୍ଦ୍ର
୪. ପାପ, ୫. ରାବଣ ୬. କୁହ



ରତିପତି- ଜନକ[1]  ନ କଲ ତ ସେବକ  ବକପର[2]  ହେଲି ନିରେଖ
ରାଜୀବ- ନେତ୍ର[3]  ଝୁରି ଝୁରି ଯାଉଛି  ସରି ସରିଲା ନାହିଁ ଯେଣୁ ଦୁଖ ହେ
ଦୀନବନ୍ଧୁ
ରସା[4]ରେ କେ ମୋର ଆରତ
ହତ ହୋଇ କରିବ ହତ
ରାସେଶ୍ୱର ମୋହର  ହରଷେ ତାପ[5] ବାର  ବାରଣ କରି ତୋଷ ବିତ ହେ
ଦୀନବନ୍ଧୁ ।୨୭।

୧. କନ୍ଦର୍ପର ପିତା ଯେ ଶ୍ରୀ କୃଷ୍ଣ ୨. ଶ୍ରୀକୃଷ୍ଣ (ବକାସୁରକୁ ମାରିଥିବା)
୩. ପଦ୍ମନେତ୍ର : ବିଷ୍ଣୁ ୪. ପୃଥିବୀ ୫. ଦୁଃଖସମୂହ



ଲକ୍ଷ୍ମୀପ୍ରିୟ ସଜ୍ଜନ-  ଜନ ସଙ୍ଗେ ମଜ୍ଜନ  ଜନ୍ମାବ୍ଧିରୁ[1] ମୋର ନାହିଁ
ଲକ୍ଷ୍ମଣାଗ୍ରଜ[2] ମାନ  ମାନସୁ କର ଆନ  ଆନନ୍ଦେ ସେ ସଙ୍ଗକୁ ଦେଇ ହେ
ଦୀନବନ୍ଧୁ
ଲଯ୍ୟକରି ପାଦ- ପଲବେ
ଲବେ ମୁ ନ ଛାଡ଼ିବି କେବେ
ଲୀଳାରେ ମଜି ତବ  ସ୍ତବ ଭାବି ମୋ ଜୀବ  ଯିବ ସଦା ମୁଁ ଯେହ୍ନା ଭାବେ ହେ
ଦୀନବନ୍ଧୁ ।୨୮।

୧. ଜନ୍ମକାଳରୁ ୨. ରାମଚନ୍ଦ୍ର



ବିନାଶିଛ ନୃପତି-   ପନ୍ତିଙ୍କର[1] ବିପତି   ପତିତତ୍ରାଣ ଦୟାକରି
ବରଜ ଯେବେ କୃପା   କୃପାନିଧି ହେ କିମ୍ବା କି ପାପକର୍ମରୁ ମୋହରି ହେ
ଦୀନବନ୍ଧୁ
ବହନ ହୋଇ ମୋର ବଳ
ବଳୀ- ଅନୁଜ[2] କ୍ଲେଶ ଦଳ
ବାରେ ହେଲେ ଭରସା ରସାସାର ପ୍ରଶଂସା ସଂସାରେ ହୋଇବ ପ୍ରବଳ ହେ
ଦୀନବନ୍ଧୁ ।୨୯।

୧. ଜରାସନ୍ଧର ବନ୍ଦୀଗୃହରେ ଥିବା ଲକ୍ଷେ ନୃପତି
୨. ବଳଦେବଙ୍କ ସାନ ଭାଇ ଶ୍ରୀକୃଷ୍ଣ



ଶକ୍ର ଗଣେଶ ଶିବ   ଶିବଦ[1] ତୁମ୍ଭ ଭାବ   ଭାବନାରେ ନାହାନ୍ତି ଜାଣି
ଶୁକକୁ[2] ସେ ଅଶେଷ   ଶେଷ ନ କରି ଶେଷ[3] ସେ ସହସ୍ର ବଦନେ ଗୁଣି ହେ
ଦୀନବନ୍ଧୁ
ଶରଣ ଯେଣୁ ନୃକେଶରୀ[4]
ଶରୀର ଦମ୍ଭ ଯେଣୁ କରି
ଶତପତ୍ର-ଇକ୍ଷଣ[5]   କ୍ଷଣକୁ କ୍ଷଣ ପୁଣ   ପୁଣ କରୁଅଛି ଗୁହାରି ହେ
ଦୀନବନ୍ଧୁ ।୩୦।

୧. ମଂଗଳଦାତା, ୨. ଭାଗବତର ପ୍ରବକ୍ତା
୩. ଶେଷଦେବ, ଅନନ୍ତ ନାଗ ୪. ନୃସିଂହ, ୫. ପଦ୍ମନେତ୍ର



ଷଡ଼-ବେନି-ଦୁଗୁଣ[1] ଗୁଣରେ ଯେ ନିପୁଣ ପୁଣ କି ଜାଣିମେ ମହିଂମା
ଷଡ଼ାନନ-ଜନକ[2] ନ କଲେ ଯାହା ଠିକ ଠିକଣା ନ ପାଇଲେ ବ୍ରହ୍ମା ହେ
ଦୀନବନ୍ଧୁ
ଷଡ଼ାର୍ଦ୍ଧ ପୁର[3] ବିଭୂଷଣ
ଷଣପୁଷ୍ପ- ଜିତ ବସନ[4]
ଷଡ଼ିଯାଉଁଛି ତନୁ ତନୁ ହୋଇଣ ଦିନୁ- ଦିନୁ ଲଭିବାର କଷଣ ହେ
ଦୀନବନ୍ଧୁ ।୩୧ ।

୧. ଷୋଡ଼ଶ ଲକ୍ଷଣ ଯୁକ୍ତ (୬+୨**X**୨)
୨. କାର୍ତ୍ତିକେୟଙ୍କ ବାପା, ଶିବ
୩. ୬ର ଅଧା = ୩ ତିନିପୁର : ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ
୪. ଷଣ ଫୁଲ ପରି ବସ୍ତ୍ର ଯେ ପିନ୍ଧିଥାନ୍ତି, ଶୁକ୍ଳାମ୍ବରଧର ବିଷ୍ଣୁ ।



ସଦ୍ୱର ପୀତବାସ, ଦାସକୁ ଦେଇ ବାସ ଦାସବତ୍ସଳ ମୋତେ କର
ସଦାଶିବ- ତୋଷକ ସକଳ ଦୁଃଖ ଶୋକ ଶୋକ-ନାଶନ ମୋର ହର ହେ
ଦୀନବନ୍ଧୁ
ସାଦରେ ମନ୍ଦ ଦଶା ସାର[1]
ସାରଙ୍ଗଧର, ମୁ ତୁମ୍ଭର
ସଦା ଗୃହ ଜଞ୍ଜାଳ- ଜାଳରେ ନେଲି କାଳ କାଳଁ[2] ଯେ ନ କଲି ବିଚାର ହେ
ଦୀନବନ୍ଧୁ ।୩୨ ।

୧. ଶୋଷକର
୨. ମୃତ୍ୟୁ



ହତକର ମୋ ମୋହ    ମୋହନ ବହି ସ୍ନେହ    ସ୍ନେହ ନୋହୁ ମୋ ଆନ ରସେ
ହରି ଘୋର ଅଗ୍ୟାନ    ଗ୍ୟାନକୁ ଦିଅ ଘନ[୧]    ଘନ- ଜିତ- ବରନ[୨] ତୋଷେ ହେ
ହେ ଦୀନବନ୍ଧୁ
ହରଷେ ବିନାଶ ମୋହର
ହରବରକୁ[୩] ବଂଶୀଧର
ହେବ ଯେବେ ନିରାଶ    ରାସଈଶ ବିରସ    ରସଜ୍ଞ[୪] କେ କରିବ ଦୂର ହେ
ଦୀନବନ୍ଧୁ ।୩୩।

୧. ଶୀଘ୍ର ୨. ନୂଆମେଘଠାରୁ ଉଜ୍ଜ୍ୱଳକାନ୍ତି ଯାହାର : ଶ୍ରୀକୃଷ୍ଣ
୩. ଦୁଃଖ, ଅସ୍ଥିର ମାନସିକତା ୪. ରସରାଜ ଶ୍ରୀକୃଷ୍ଣ



କ୍ଷମାନିଧି ଅବିଧି    ବିଧିତ କଲ ସିଧି[୧]    ସିଧିଦ ନାମ ବହିକରି
କ୍ଷିତିରେ ଚଉଂବାହା    ବାହାରେ ନାହିଁ ସାହା    ସାହା ମୋ ନୁହ କି ବିଚାରି ହେ
ଦୀନବନ୍ଧୁ
କ୍ଷୋଭ ହେଲେ ମୋର ଅକ୍ଷୟ[୨]
କ୍ଷୟ କର ଘେନି ବିନୟ
କ୍ଷମେ[୩] ରଖି ସେବାରେ    ବାରେ ସୁବିଧାନରେ    ନରୀନ୍ଦ୍ରାନୁଜେ[୪] ହୋଇ ପ୍ରିୟ ହେ
ଦୀନବନ୍ଧୁ ।୩୪।

୧. ସକଳ ଅନୀତିକୁ ନୀତିବୋଲି ପ୍ରମାଣିତ କରୁଥିବା
ଯେ ସିଦ୍ଧିଦାତା ବା ମୋକ୍ଷଦାତା
୨. ଅକ୍ଷୟ କ୍ଷୋଭ : ଅସୀମ ଅସନ୍ତୋଷ
୩. କୁଶଳରେ, ଆନନ୍ଦରେ
୪. ଲେଖକ କୌଣସି ରାଜାଙ୍କର ସାନଭାଇ

## ପରିଶିଷ୍ଟ

## ପ୍ରକାଶିତ ଚଉତିଶାଗୁଡ଼ିକର ତାଲିକା



Source: Author, Digitized by PPRACHIN, SOA

(ଅ)

| | |
|---|---|
| ୧. ଅଙ୍ଗଭଙ୍ଗ ଚଉତିଶା | ଦୀନବନ୍ଧୁ କାବ୍ୟରଞ୍ଜନ |
| ୨. ଅଣାକାର ଓଲଟ ଚଉତିଶ | ସୁଦର୍ଶନ |
| ୩. ଅଧମ ଉଦ୍ଧାରଣ ଚଉତିଶା | ଲୋକନାଥ ଦାସ |
| ୪. ଅନୁମାନ ଚଉତିଶା | ରାମଚନ୍ଦ୍ର ଓ ବିଶି |
| ୫. ଅନୁରାଗ ରତ୍ନାକର ଚଉତିଶା | ଦୀନକୃଷ୍ଣ ଦାସ |
| ୬. ଅନ୍ତର୍ଦାହ ଚଉତିଶା | ରାଧା ଦେବୀ |
| ୭. ଅବତାର ଚଉତିଶା | ଦୟାନିଧି |
| ୮ ଅବୁଝା ମନ ଚଉତିଶା | ନିରଞ୍ଜନ ରଥ |
| ୯. ଅଭିନ୍ନା ଚଉତିଶା | ଦାଶରଥି ଦାସ |
| ୧୦. ଅମୃତନିଧି ଚଉତିଶା | ଦୀନକୃଷ୍ଣ ଦାସ |
| ୧୧ ଅଲେଖ ଚଉତିଶା | ସୁଦର୍ଶନ |
| ୧୨. ଅଷ୍ଟାଙ୍ଗଯୋଗ ଚଉତିଶା | ଲକ୍ଷ୍ମୀଧର ତିହାଡ଼ି |
| ୧୩. ଅକ୍ଷୟ ଚଉତିଶା | ଭଗବାନ ଚନ୍ଦ୍ର ଦାସ |

(ଆ)

| | |
|---|---|
| ୧୪. ଆଦ୍ୟ ପ୍ରାନ୍ତ ସମାନ ବର୍ଣ୍ଣ ଚଉତିଶା | ଗୋକୁଳ |
| ୧୫. ଆର୍ତ୍ତତ୍ରାଣ ଚଉତିଶା | ଦୀନକୃଷ୍ଣ ଦାସ |

(ଉ)

| | |
|---|---|
| ୧୬. ଉତ୍କଳ ଗୌରବ ଚଉତିଶା | ଦାମୋଦର ପଟ୍ଟନାୟକ |
| ୧୭. ଉଦ୍ଧବ ଚଉତିଶା | କୃପାସିନ୍ଧୁ ସୁମନ୍ତ |
| ୧୮. ଉଦ୍ଧବ ଚଉତିଶା | କୃଷ୍ଣ କର |
| ୧୯. ଉଦ୍ଧବ ଚଉତିଶା | କୃଷ୍ଣ ଦାସ |
| ୨୦. ଉଦ୍ଧବ ଚଉତିଶା | ଦୀନକୃଷ୍ଣ ଦାସ |
| ୨୧. ଉଦ୍ଧବ ଚଉତିଶା | ବଂଶୀ |
| ୨୨. ଉଦ୍ଧବ ଚଉତିଶା | ଭୂପତି ପଣ୍ଡିତ |
| ୨୩. ଉପାସନା ଚଉତିଶା | ଭାବଗ୍ରାହୀ ଦାସ |
| ୨୪. ଉମାଦେବୀ ଜଣାଣ ଚଉତିଶା | ଜୟଦେବ ଠାକୁର |

(କ)

| | |
|---|---|
| ୨୫. "କଦଳୀ ବୃକ୍ଷ ଲକ୍ଷେ, ତୟାର ହୋଇବ" : | ଭୀମ ଭୋଇ |
| ୨୬. କମଳ କେଶର ଚଉତିଶା | ଜଗନ୍ନାଥ ଦାସ |
| ୨୭. କମଳଦଳ ଚଉତିଶା | ଗୋକୁଳ ନରେନ୍ଦ୍ର |
| ୨୮. କମଳନେତ୍ର ଜଣାଣ | ସାନ ଚନ୍ଦ୍ର |
| ୨୯. କମଳ ବଦନୀ ଚଉତିଶା | ପତିତପାବନ |
| ୩୦. କମଳ ଲୋଚନ ଚଉତିଶା | ବଳରାମ ଦାସ |
| ୩୧. କମଳାକାନ୍ତ ଚଉତିଶା | ଦୀନକୃଷ୍ଣ ଦାସ/କୁଅଁର |
| ୩୨. କମଳିନୀ ଜଣାଣ ଚଉତିଶା | ଅଭିମନ୍ୟୁ ପଟ୍ଟନାୟକ |
| ୩୩. "କରତା ପୁରୁଷ ବୋଲି କରପତ୍ର ଯୋଡ଼ି" : | ଭୀମ ଭୋଇ |
| ୩୪. "କର୍ତ୍ତା ଛାମୁରେ କର ଯୋଡ଼ି" | ଭୀମ ଭୋଇ |
| ୩୫. "କର୍ମଆଦରି ଥାଅ ସର୍ବେ" | ଭୀମ ଭୋଇ |
| ୩୬. "କର୍ମ ଦେବ ଯାକୁ କହି" | ଭୀମ ଭୋଇ |
| ୩୭. "କରାଇ କାମନା କର୍ମ ବିଚିତ୍ର" | ଭୀମ ଭୋଇ |
| ୩୮. କରୁଣାକର ଚଉତିଶା | ଚିନ୍ତାମଣି ପ୍ରହରାଜ |
| ୩୯. କରୁଣାନିଧି ଚଉତିଶା | ନିରଳେ ରଥ |
| ୪୦. କରୁଣାସାଗର ଚଉତିଶା | ବିପ୍ର କାଶୀ |
| ୪୧. କରେ କୋଦଣ୍ଡ ଚଉତିଶା | ମୁକୁନ୍ଦ |
| ୪୨. କର୍ମକୁ ନ କଲେ କାମନା ସିଦ୍ଧ ହୁଅଇ ନାହିଁ | ଭୀମ ଭୋଇ |
| ୪୩. କଳଙ୍କି ଉଦେ ଚଉତିଶା | ବାରଙ୍ଗ ଦାସ |
| ୪୪. କଳକଣ୍ଠ ଚଉତିଶା | ବାଣପୁର ଅଧିପ |
| ୪୫. କଳସା ଚଉତିଶା (ଗଉରା କଳସା) | ବସ୍ତା ଦାସ (ବଂଶୀ ଦାସ) |
| ୪୬. କଳାକର ଚଉତିଶା | କରୁଣାକର ଦାସ |
| ୪୭. କଳାକଳେବର ଚଉତିଶା | ଭକ୍ତ ଚରଣ ଦାସ |
| ୪୮. କଳାନିଧି ଚଉତିଶା | ସିଂହ ଭ୍ରମର ବର |
| ୪୯. କଳାମେଘ ଚଉତିଶା | କିଶୋର ଦେବ (ବଡ଼ଗଡ଼ାଧିଶ୍ୱର) |

| | |
|---|---|
| ୫୦. କଳାହାସୀ ଚଉତିଶା | କବିସୂର୍ଯ୍ୟ ବଳଦେବ |
| ୫୧. କଲି ଗମନ ଚଉତିଶା | ନୃସିଂହ ରାୟ |
| ୫୨. କଳି ଚଉତିଶା | ହାଡ଼ି ଦାସ |
| ୫୩. କଳିଯୁଗ ଚଉତିଶା | ଜଗନ୍ନାଥ ଦାସ |
| ୫୪. "କଳିଯୁଗ କରତା ବିଜେ ଏ ମହୀତଳେ" : | ଭୀମ ଭୋଇ |
| ୫୫. "କଳିଯୁଗ କରତା ବିଜୟେ ମହୀତଳେ" : | ଭୀମ ଭୋଇ |
| ୫୬. "କଳିଯୁଗ ଶେଷ ହେଉଅଛି ଆସି" | ଭୀମ ଭୋଇ |
| ୫୭. "କଳିଯୁଗ ହେଉଅଛି ଶେଷ" | ଭୀମ ଭୋଇ |
| ୫୮ "କହୁଅଛି ମୁଁ ଯେ ମନକୁ" | ପର୍ଶୁରାମ ଦାସ |
| ୫୯. "କକ୍ଷଣ ଦେଖ କଳେବର" | ଭୀମ ଭୋଇ |
| ୬୦. କାକପୋଇ ଚଉତିଶା | ଗୋବିନ୍ଦ ରଥ |
| ୬୧. "କାଦମ୍ବିନୀ ଚଉତିଶା" | ଅଜ୍ଞାତ |
| ୬୨. କାତ୍ୟାୟନୀ ଜଣାଣ ଚଉତିଶା | ଶ୍ରଦ୍ଧାମୟୀ ଦେବୀ |
| ୬୩. କାନ୍ଦି କହେ ନନ୍ଦରାଣୀ ଚଉତିଶା | ହରିମାତା |
| ୬୪. କାମଦୁଘା ଚଉତିଶା | ଲଡୁକେଶ |
| ୬୫. କାମଦୁହା ଚଉତିଶା | କବିସୂର୍ଯ୍ୟ ବଳଦେବ |
| ୬୬. କାମସେଣୀ ଚଉତିଶା | |
| ୬୭. କାଳୀୟଦଳନ ଚଉତିଶା | ଦନାଇ ଦାସ |
| ୬୮. କିଶୋରୀ ଚଉତିଶା | ପୀତାମ୍ବର ଭଞ୍ଜ |
| ୬୯. କିଶୋରୀ ବିଚ୍ଛେଦ ଚଉତିଶା | ପୀତାମ୍ବର ଭଞ୍ଜ |
| ୭୦. "କିସ ଜଣାଇବି ପ୍ରଭୁ ଛାମୁରେ" | ଭୀମ ଭୋଇ |
| ୭୧. କୁଳଫୁଲ ଚଉତିଶା | ଭଗବାନ ଦାସ |
| ୭୨. କୁମ୍ଭକାମୋଦୀ ଚଉତିଶା | ବିପ୍ର ନାରାୟଣ |
| ୭୩. "କୁମ୍ଭପଟ କରି ଭେକ" | ଭୀମ ଭୋଇ |
| ୭୪. କୁମୁଦକାନ୍ତ ଚଉତିଶା | ନାରାୟଣ ଦାସ |
| ୭୫. "କୁସୁମ ସମୟ କାଳେ" | ନରସିଂହ ସେଣ |
| ୭୬. "କୁସୁମିତ ବୃତକୁଞ୍ଜ" ଚଉତିଶା | ଶିଶୁ ଶ୍ୟାମ |

| | |
|---|---|
| ୭୭. କୁହୁକଣ୍ଠ ଚଉତିଶା | ବିପ୍ର ମଧୁସୂଦନ କବିଚନ୍ଦ୍ର |
| ୭୮ କୁରାଶିନୀ ଜଣାଣ ଚଉତିଶା | ଚନ୍ଦ୍ର ଚୂଡ଼ାମଣି ହରିଚନ୍ଦନ ଜଗଦ୍ଦେବ |
| ୭୯. କୁସୁମ ସୌରଭ ଚଉତିଶା | |
| ୮୦. କୃପାମୟୀ ଜଣାଣ ଚଉତିଶା | ଗୋପବନ୍ଧୁ |
| ୮୧. କୃପାମୟୀ ଜଣାଣ ଚଉତିଶା | ଦୀନବନ୍ଧୁ ଦାସ |
| ୮୨. କୃପାସାଗର ଚଉତିଶା | ଲକ୍ଷ୍ମୀଧର ତିହାଡି |
| ୮୩. "କୃପାସାଗର କାମନାଶୂନ୍ୟ ନାନା": | ଭୀମ ଭୋଇ |
| ୮୪. କୃଷ୍ଣକଳା ଚଉତିଶା | ଦୀନକୃଷ୍ଣ ଦାସ |
| ୮୫. କୃଷ୍ଣଚନ୍ଦ୍ର ଚଉତିଶା | ଦୀନକୃଷ୍ଣ ଦାସ |
| ୮୬. କୃଷ୍ଣ ନାମାମୃତ ଚଉତିଶା | |
| ୮୭. କୃଷ୍ଣ ବିଚ୍ଛେଦ ଚଉତିଶା | ଗୋପଜୀବନ |
| ୮୮ କୃଷ୍ଣ ବିରହ ଚଉତିଶା | ଗୋକୁଳ ନରେନ୍ଦ୍ର |
| ୮୯. କୃଷ୍ଣ ବିରହ ଚଉତିଶା | ଦୀନକୃଷ୍ଣ ଦାସ |
| ୯୦. କୃଷ୍ଣ ବିଳାପ ଚଉତିଶା | ଲୋକନାଥ |
| ୯୧. କୃଷ୍ଣ ଭାଳେଣୀ ଚଉତିଶା | ହରି ଦାସ |
| ୯୨. କୃଷ୍ଣ ରାମହରି ଚଉତିଶା | |
| ୯୩. କୃଷ୍ଣ ସିଂହ ଚଉତିଶା (ରାଧା ବିରହ ଚଉତିଶା) | ନୃପ କୃଷ୍ଣ ସିଂହ |
| ୯୪. କେଳି କଳ୍ପଦ୍ରୁମ ଚଉତିଶା | ଧନଞ୍ଜୟ ଭଞ୍ଜ |
| ୯୫. କେଳି ସଦନ ଚଉତିଶା | |
| ୯୬. କେତକୀ ଫୁଲ ଚଉତିଶା | ହାଡ଼ି ଦାସ |
| ୯୭. କୋକିଳ ଚଉତିଶା | ଅଭିମନ୍ୟୁ ସାମନ୍ତସିଂହାର |
| ୯୮. କୋକିଳ ଚଉତିଶା | ବଂଶୀଧର |
| ୯୯. କୋକିଳ ଚଉତିଶା | ମୁକୁନ୍ଦ ଦେବ |
| ୧୦୦. କୋକିଳ ଚଉତିଶା | ଶ୍ୟାମଘନ |
| ୧୦୧. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଚଉତିଶା : | ଶ୍ୟାମଘନ |
| ୧୦୨. କୋଟାଇ ଗୁଣ୍ଡିଚା ଚଉତିଶା | |
| ୧୦୩. କୋଳାହଳ ଚଉତିଶା | ଅଜ୍ଞାତ |
| ୧୦୪. କୋଳାହଳ ଚଉତିଶା | ଦୈବଜ୍ଞ ବଳରାମ |
| ୧୦୫. କୋଳାହଳ ଚଉତିଶା | ବିପ୍ର ନାରାୟଣ |
| ୧୦୬. କୋଳାହଳ ଚଉତିଶା | କାର୍ତ୍ତିକ ଚନ୍ଦ୍ର ପାଣ୍ଡେ |
| ୧୦୭. କୌଶଲ୍ୟା ବିଳାପ ଚଉତିଶା | ରଘୁନାଥ |
| ୧୦୮ କୌଶଲ୍ୟା ରୋଦନ ଚଉତିଶା | ରଘୁନାଥ |
| **(ଖ)** | |
| ୧୦୯. "ଖତମ ହେଉଛି ଏକୋଇଶପୁର": | ଭୀମ ଭୋଇ |
| ୧୧୦. "ଖର୍ବ ଖର୍ବ ଭକ୍ତ ହୋଇ ଭକ୍ତ" | ଭୀମ ଭୋଇ |
| ୧୧୧. "ଖରାପ ହୋଇଗଲେ ପିଣ୍ଡ" | ଭୀମ ଭୋଇ |
| ୧୧୨. "ଖେଳ ଦେଖ ଖିନ ନାଳେ" | ଭୀମ ଭୋଇ |
| ୧୧୩. "ଖୋଲପୋଲ ନୁହନ୍ତି ନିଦା ମୂର୍ତ୍ତି": | ଭୀମ ଭୋଇ |
| ୧୧୪. ଖଣ୍ଡବାଣୀ ଚଉତିଶା | ରାଜେନ୍ଦ୍ର |
| **(ଗ)** | |
| ୧୧୫. ଗଣ୍ଡାଧରଙ୍କ ଚଉତିଶା | ଗଣ୍ଡାଧର |
| ୧୧୬. ଗଣିତ ଚଉତିଶା | ଅନ୍ଧ ବିକ୍ରମ |
| ୧୧୭. ଗଣେଶ ସ୍ତୁତି ଚଉତିଶା | ଦିବାକର |
| ୧୧୮. ଗୁଣ୍ଡିଚା ବିଜେ ଚଉତିଶା | ସନ୍ଥ ଗୋବିନ୍ଦ ଦାସ |
| ୧୧୯. ଗୁଣ୍ଡିଚା ଭାବନା ଚଉତିଶା | ଦୀନକୃଷ୍ଣ ଦାସ |
| ୧୨୦. ଗୋପଜୀବନ ଚଉତିଶା | ଶ୍ରୀକର |
| ୧୨୧. ଗୋପଲୀଳା ସପ୍ତରାଗ ଚଉତିଶା | ଲୋକନାଥ ବିଦ୍ୟାଧର |
| ୧୨୨. ଗୋପୀଜ୍ଞାନ ଚଉତିଶା | ହରି ଦାସ |
| ୧୨୩. ଗୋପୀଭକ୍ତି ଚଉତିଶା | ଲକ୍ଷ୍ମୀଧର ତିହାଡ଼ି |
| ୧୨୪. ଗୋପୀରୋଦନ ଚଉତିଶା | ଶ୍ୟାମ ସୁନ୍ଦର |
| ୧୨୫. ଗୋପୀ ସନ୍ଦେଶ ଚଉତିଶା | ଦୀନକୃଷ୍ଣ ଦାସ |
| ୧୨୬. ଗୌରହରି ଜଣାଣ ଚଉତିଶା | ଗଂଗାପ୍ରସାଦ ଚୌଧୁରୀ |
| **(ଘ)** | |
| ୧୨୭. ଘନମାଳା ଚଉତିଶା | ବାମଦେବ |
| ୧୨୮. ଘନଶ୍ୟାମ ଚଉତିଶା | ଦୀନକୃଷ୍ଣ ଦାସ |
| **(ଚ)** | |
| ୧୨୯.ଚଉତିଶା ଭଜନ | ହାଡ଼ି ଦାସ |
| ୧୩୦. ଚତୁରୀ ଚଉତିଶା | ଯଦୁନାଥ ସିଂହ |
| ୧୩୧. ଚନ୍ଦ୍ରଦୂତ ଚଉତିଶା | ରଘୁନାଥ ହରିଚନ୍ଦନ |
| ୧୩୨. ଚନ୍ଦ୍ରଦୂତ ଚଉତିଶା | ରଘୁନାଥ ହରିଚନ୍ଦନ |
| ୧୩୩. ଚନ୍ଦ୍ରମୁଖୀ ଚଉତିଶା | କ୍ଷତ୍ରିୟବର ଦେବ |
| ୧୩୪. ଚନ୍ଦ୍ରାବଳୀ ଚଉତିଶା | ଭ୍ରମରବର ରାୟ |
| ୧୩୫. ଚନ୍ଦ୍ରାବଳୀ ଚଉତିଶା | ଜୟରାମ |
| ୧୩୬. ଚମତ୍କାର ଚଉତିଶା | ଦୀନବନ୍ଧୁ ମହାପାତ୍ର |
| ୧୩୭. "ଚଳଇ ରଥ" ଚଉତିଶା | |
| ୧୩୮. ଚାଟୁ ଚଉତିଶା | ରାଜୀବ |
| ୧୩୯. ଚାଟୁ ଚଉତିଶା | ଶ୍ରୀଧର |
| ୧୪୦. ଚାଟୁ ତରଙ୍ଗ ଚଉତିଶା | |
| ୧୪୧. ଚାରୁ ମଣ୍ଡନ ଚଉତିଶା | :କବିସୂର୍ଯ୍ୟ ବଳଦେବ (ବାଲୁଙ୍କି) |
| ୧୪୨. ଚିତ୍ତବିନୋଦ ଚଉତିଶା | ହରିହର ମିଶ୍ର |
| ୧୪୩. ଚିତ୍ତବୋଧ ଚଉତିଶା | ବିଦ୍ୟାଧର ମିଶ୍ର |
| ୧୪୪. ଚିଟାଉ ଚଉତିଶା | ଉପେନ୍ଦ୍ର ଭଞ୍ଜ |
| ୧୪୫. ଚିଟାଉ ଚଉତିଶା | ବ୍ରଜସୁନ୍ଦର |
| ୧୪୬. ଚିଟାଉ ଚଉତିଶା | ବିଷ୍ଣୁ ଦାସ |
| ୧୪୭. ଚିଟାଉ ଚଉତିଶା | ଲକ୍ଷ୍ମୀ ନାରାୟଣ |
| ୧୪୮ ଚେତନ ଚଉତିଶା | ଲକ୍ଷ୍ମୀ ନାରାୟଣ |
| ୧୪୯. ଚୋଖୀ ଚଉତିଶା | ଭଗବାନ |
| ୧୫୦ ଚୋରଣୀ ଚଉତିଶା | ଯଜ୍ଞେଶ୍ୱର ନାୟକ |
| ୧୫୧. ଛନ୍ଦ ଶ୍ଳେଷ ଯମକାନୁପ୍ରାସ | ଲୋକନାଥ |
| ୧୫୨. ଚଉତିଶା (ବା କ୍ଷମକସାଗର ଚଉତିଶା) | |

୧୫୩. ଛନ୍ଦା ଚଉତିଶା — ଭଉଁରୀ ଦାସ
୧୫୪. ଚାଟୁ ଚଉତିଶା — ଶିଶୁ ଅନନ୍ତ ଦାସ
୧୫୫. ଜଗବନ୍ଧୁ ଚଉତିଶା — ଭକ୍ତ ଦାସ

(ଜ)

୧୫୬. ଜଗବନ୍ଧୁ ଜଣାଣ ଚଉତିଶା — ସାଧୁ
୧୫୭. ଜଗବନ୍ଧୁ ଚଉତିଶା — ମାଗୁଣି
୧୫୮. ଜଗନ୍ନାଥ ଓ ବଳଦେବ ଜୀଉ ଜଣାଣ : ବଳଦେବ ଦାସ ନାଗା
୧୫୯. ଜଗନ୍ନାଥ ଜଣାଣ ଚଉତିଶା — ଆନନ୍ଦ ମିଶ୍ର ଶର୍ମା
୧୬୦. ଜଗନ୍ନାଥ ଚଉତିଶା — ନିମାଇଁ ଚାନ୍ଦ
୧୬୧. ଜଗନ୍ନାଥ ତତ୍ତ୍ୱ ଚଉତିଶା — ଅଚ୍ୟୁତାନନ୍ଦ ଦାସ
୧୬୨. ଜଣାଣ ଚଉତିଶା — ଅଚ୍ୟୁତାନନ୍ଦ ଦାସ
୧୬୩. ଜଣାଣ ଚଉତିଶା — ଗୋବିନ୍ଦ
୧୬୪. ଜଣାଣ ଚଉତିଶା — ରାମଚନ୍ଦ୍ର ନନ୍ଦ
(କପିଳାସର ଚନ୍ଦ୍ରଶେଖରଙ୍କ ଉଦ୍ଦେଶ୍ୟରେ ରଚିତ)
୧୬୫. ଜଳଦ ଚଉତିଶା — ଗୋପାଳ କୃଷ୍ଣ
୧୬୬. ଜଳଦ ଚଉତିଶା — ପୁରୁଷୋତ୍ତମ ଦାସ
୧୬୭. ଜଳଧର ଚଉତିଶା — ଭୀମ ଦାସ
୧୬୮. ଜଳଧର ଚଉତିଶା — ବଳଭଦ୍ର ଭଞ୍ଜ
୧୬୯. ଜାଇଫୁଲ ଚଉତିଶା — ଗୋପାଳ କୃଷ୍ଣ
୧୭୦. ଜାଇଫୁଲ ଝୁମ୍ପା ଚଉତିଶା — କବିସୂର୍ଯ୍ୟ ବଳଦେବ
୧୭୧. ଜାନକୀ ବିଚ୍ଛେଦ ଚଉତିଶା — ରାମାନନ୍ଦ
୧୭୨. ଜାନକୀ ସ୍ମରଣ ଚଉତିଶା — କୃଷ୍ଣ ଦାସ
୧୭୩. ଜାନକୀ ସ୍ମରଣ ଚଉତିଶା — ଲୋକନାଥ
୧୭୪. ଜାନୁ ଚଉତିଶା — ଶିରୁ ଦାସ
୧୭୫. ଜ୍ଞାନଉଦେ ଚଉତିଶା — ରଘୁ ଅରକ୍ଷିତ,
୧୭୬. ବଳରାମ ଦାସ ଓ କାହ୍ନୁ
୧୭୭. ଜୀବଜୀବନ ଚଉତିଶା — ଶ୍ୟାମଘନ
୧୭୮. ଜୀବନ ଚଉତିଶା — ଚତୁର୍ଭୁଜ ପଟ୍ଟନାୟକ

(ଢ)

୧୭୯. ଢେଙ୍କା ଚଉତିଶା — କପିଳ ମୁନି

(ତ)

୧୮୦. ତ୍ରୟରାଗ ଚଉତିଶା — ଗୋକୁଳ ନରେନ୍ଦ୍ର

(ଦ)

୧୮୧. ଦାଣ୍ଡଧୁଆ ଚଉତିଶା — ଜଗନ୍ନାଥ ଦାସ
୧୮୨. ମେଘ ଚଉତିଶା — ହରି ଦାସ
୧୮୩. ଦୀନଜନ ଜଣାଣ ଚଉତିଶା — :ଅଭିମନ୍ୟୁ ସାମନ୍ତସିଂହାର
୧୮୪. ଦୀନବନ୍ଧୁ ଚଉତିଶା — କୃଷ୍ଣ ଦାସ
୧୮୫. ଦୁର୍ଗାଜଣାଣ ଚଉତିଶା — ଶ୍ରୀଧର ଶତପଥୀ
୧୮୬. ଦୂତୀ ଚଉତିଶା — ବଳରାମ ଦାସ
୧୮୭. ଦୂତୀ ଚଉତିଶା — ଲକ୍ଷ୍ମୀଧର ତିହାଡି
୧୮୮. ଦୂତୀ ଚଉତିଶା — ସଦାନନ୍ଦ
୧୮୯. ଦୂତୀବୋଧ ଚଉତିଶା — ଅଚ୍ୟୁତାନନ୍ଦ ଦାସ
୧୯୦. ଦୃଷ୍ଟାନ୍ତ ଚଉତିଶା — ଦୀନକୃଷ୍ଣ ଦାସ
୧୯୧. ଦେବଦେବୀ ଚଉତିଶା — ପଣ୍ଡିତ କାଳୀଚରଣ ଦାସ ଗୋସ୍ୱାମୀ

(ଧ)

୧୯୨. ଧନୁଭଙ୍ଗ ଚଉତିଶା — ଶ୍ରୀଧର
୧୯୩. ଧବଳେଶ୍ୱର ଜଣାଣ ଚଉତିଶା — ମୋହନ

(ନ)

୧୯୪. ନବକିଶୋରୀ ଚଉତିଶା — ବୈଷ୍ଣବ ଚରଣ ଦାସ
୧୯୫. ନବାନୁରାଗ ଚଉତିଶା — ଭୁବନେଶ୍ୱର
୧୯୬. ନନ୍ଦାବାଇ ଚଉତିଶା — ନନ୍ଦାବାଇ
୧୯୭. ନବଘନ ଚଉତିଶା — ପରମାନନ୍ଦ ଦାସ
୧୯୮. ନବଘନ ଚଉତିଶା — ଦୀନକୃଷ୍ଣ ଦାସ
୧୯୯. ନବଘନ ଚଉତିଶା — ଶ୍ରୀଧର
୨୦୦. ନାନାରତ୍ନ ଚଉତିଶା — ଗୋପୀନାଥ କର
୨୦୧. ନାରାୟଣ କୃତ ଚଉତିଶାମାଳା — ନାରାୟଣ
୨୦୨. ନାରୀଧର୍ମ ଚଉତିଶା — ନିରଞ୍ଜନ
୨୦୩. ନିଆଳି ଚଉତିଶା — ଲିଙ୍ଗରାଜ
୨୦୪. ନିତ୍ୟାନନ୍ଦ ଜଣାଣ ଚଉତିଶା — ବଳରାମ ବହିଦାର
୨୦୫. ନିର୍ଗୁଣ ପଢ଼ି ଚଉତିଶା — ରାଧାକିଶୋର ଦାସ
୨୦୬. ନିଶାମଣି ଚଉତିଶା — ବ୍ରଜବିହାରୀ ଶ୍ରୀଚନ୍ଦନ
୨୦୭. ନୀତିସାର ଚଉତିଶା — ପଦ୍ମନାଭ ଦେବ
୨୦୮. ନୀଳକଣ୍ଠ ଚଉତିଶା — ଗୋକୁଳ ନରେନ୍ଦ୍ର
୨୦୯. ନୀଳକଣ୍ଠ ଚଉତିଶା — ହରିଶରଣ ଭଞ୍ଜ
୨୧୦. ନୀଳଗିରି ଚଉତିଶା — ଜଗନ୍ନାଥ ଦାସ
୨୧୧. ନୀଳାଦ୍ରୀଶ ଚଉତିଶା — ଉପେନ୍ଦ୍ର ଭଞ୍ଜ

(ପ)

୨୧୨. ପଚିଶ ପଦିଆ — ବିଶ୍ୱମ୍ଭର ରାଜେନ୍ଦ୍ର ଦେବ
୨୧୩. ପବନଦୂତ ଚଉତିଶା
୨୧୪. ପରମାର୍ଥ ଜଣାଣ ଚଉତିଶା — ବଳରାମ ବହିଦାର
୨୧୫. ପରୀକ୍ଷାର୍ଥୀ ଭାଳେଣୀ ଚଉତିଶା — ସୁଦର୍ଶନ ଆଚାର୍ଯ୍ୟ
୨୧୬. ପଣ୍ଡିତବୋଧ ଚଉତିଶା — ଧନଞ୍ଜୟ ଭଞ୍ଜ
୨୧୭. ପହଳି ଚଉତିଶା — ଦନାଇ ଦାସ
୨୧୮. ପ୍ରବେଶ ଚଉତିଶା — ବିଷ୍ଣୁ ଭଞ୍ଜ
୨୧୯. ପାକେଲା ଚଉତିଶା — କବି ରବି
୨୨୦. ପାଦାନ୍ତ ଯମକ ଚଉତିଶା — ହରିଶରଣ ଭଞ୍ଜ
୨୨୧. ପାର୍ବତୀ ଜଣାଣ ଚଉତିଶା — ନୀଳାମ୍ବର ଦ୍ୱିଜ
୨୨୨. ପ୍ରାଣଧନ ଚଉତିଶା — ଧନଞ୍ଜୟ ଭଞ୍ଜ
୨୨୩. ପ୍ରାଣବନ୍ଧୁ ଚଉତିଶା — ନରେନ୍ଦ୍ର
୨୨୪. ପ୍ରାଣସଖା ଚଉତିଶା — ଦୀନକୃଷ୍ଣ ଦାସ
୨୨୫. ପିଙ୍କବର ଚଉତିଶା — ଗୋବର୍ଦ୍ଧନ

| | |
|---|---|
| ୨୨୬. ପିଣ୍ଡବ୍ରହ୍ମାଣ୍ଡ ଚଉତିଶା | ଅଚ୍ୟୁତା ନନ୍ଦ |
| (ଚଉପଦୀ ଭଜନ ୧/୦୪) | (ଦ୍ୱାରକା ଦାସ) |
| ୨୨୭. ପ୍ରିୟା ବିଚ୍ଛେଦ ଚଉତିଶା | ନୃସିଂହ ଭ୍ରମରବର |
| ୨୨୮. ପ୍ରୀତି ଚିନ୍ତାମଣି ଚଉତିଶା | ବୈଷ୍ଣବ ଚରଣ ଦାସ |
| ୨୨୯. ପ୍ରୀତିଟେକ ଚଉତିଶା | ଧନଞ୍ଜୟ ଭଞ୍ଜ |
| ୨୩୦. ପୂରବୀ ଚଉତିଶା | ରାଜେନ୍ଦ୍ର ଦେବ |
| ୨୩୧. ପ୍ରେମ ଚିନ୍ତାମଣି ଚଉତିଶା | ସାଧୁ ଚରଣ ଦାସ |
| **(ଫ)** | |
| ୨୩୨. ଫୁଲ ବଉଳବେଣୀ ଚଉତିଶା | ବୈଷ୍ଣବ ଚରଣ ଦାସ |
| **(ବ)** | |
| ୨୩୩. ବଉଳ ଚଉତିଶା | ଦୀନକୃଷ୍ଣ ଦାସ |
| ୨୩୪. ବଉଳ ଚଉତିଶା | ଦାମୋଦର ଦାସ |
| ୨୩୫. ବଉଳ ଚଉତିଶା | ବଂଶୀଧର ଦାସ |
| ୨୩୬ ବଉଳ ଚଉତିଶା | ଶ୍ୟାମସୁନ୍ଦର ଗନ୍ତାୟତ |
| ୨୩୭. ବକ୍ର ଦୁର୍ଗେଶଙ୍କ ଚଉତିଶା | ବକ୍ର ଦୁର୍ଗେଶ |
| ୨୩୮. ବଡ଼ ଉଦ୍ଧବ ଚଉତିଶା | ଦନେଇ ଦାସ |
| ୨୩୯. ବନବାସ ଚଉତିଶା | ହଟ ପାତ୍ର |
| ୨୪୦. ବର୍ଷା ବିରହ ଚଉତିଶା | ବକ୍ର ଦୁର୍ଗେଶ |
| ୨୪୧. ବର୍ଷା-ଭାବନା ଚଉତିଶା | ବିଷ୍ଣୁ ଦାସ |
| ୨୪୨. ବଣ୍ଟିଆ ଶିଶୁଙ୍କ ଚଉତିଶା | ବଣ୍ଟିଆ ଶିଶୁ |
| ୨୪୩. ବନ୍ଧୁ ଚଉତିଶା | |
| ୨୪୪. ବଳାହକ ଚଉତିଶା | ବ୍ରଜରାଜ ସିଂହଦେବ |
| ୨୪୫. ବସନ୍ତ କଳସା ଚଉତିଶା | ଲକ୍ଷ୍ମୀଧର ତିହାଡ଼ି |
| ୨୪୬. ବ୍ରଜତ୍ୟାଜ ଚଉତିଶା | ରାମରୁଦ୍ର ସିଂହ |
| ୨୪୭. ବ୍ରହ୍ମଭେଦ ଚଉତିଶା | : ସୁବୁଦ୍ଧି ଗୋସାଇଁ ରାମଦାସ |
| ୨୪୮. ବା ଚଉତିଶା | ଲୋକନାଥ |
| ୨୪୯. ବା ଚଉତିଶା | ବିପ୍ର କପିଳ |
| ୨୫୦. ବା ଚଉତିଶା | ନାରଣ |
| ୨୫୧. ବାନ୍ଧବୀ ଚଉତିଶା | ଦୀନକୃଷ୍ଣ ଦାସ |
| ୨୫୨. ବାନାମ୍ବର ଚଉତିଶା | ଦୟା ଦାସ |
| ୨୫୩. ବାରମାସୀ ଚଉତିଶା | |
| ୨୫୪. ବାଳବୋଲି ଚଉତିଶା | ଦ୍ୱାରକା ଦାସ |
| ୨୫୫. ବାଲୁଙ୍କେଶ୍ୱର ଜଣାଣ ଚଉତିଶା | କୃତି ଦାସ |
| ୨୫୬. ବାଲ୍ୟବିଧବା ଚଉତିଶା | ତ୍ରିପତି ଗାୟକ ରତ୍ନ |
| ୨୫୭. ବିଜୟ ଗମନ ଚଉତିଶା | ଭକ୍ତ ଦାସ |
| ୨୫୮ ବିଜୟ ଭକ୍ତି ଚଉତିଶା | ଭକ୍ତ ଦାସ |
| ୨୫୯. ବିପ୍ର ସିଂହ ଚଉତିଶା | ବିପ୍ର ସିଂହ |
| ୨୬୦. ବିଦେଶାନୁଚିନ୍ତା ଚଉତିଶା | ବାଳକୃଷ୍ଣ ଦାସ |
| ୨୬୧. ବିଦ୍ୟୁଲ୍ଲତା ଚଉତିଶା | ନାରାୟଣ ଭଞ୍ଜ |
| ୨୬୨. ବିରହିଣୀ ଚଉତିଶା | ଶ୍ୟାମଘନ |
| ୨୬୩. ବିମଳା ସ୍ତୁତି | ଗୌରାଙ୍ଗ ମହାପାତ୍ର |
| ୨୬୪. ବିରସିଂହ ଚଉତିଶା | ବୀର ସିଂହ |
| (ଜ୍ଞାନ କଳସା ଚଉତିଶା) | |
| ୨୬୫. ବୈଦେହୀ ଚଉତିଶା | କିଶୋର ଦାସ |
| ୨୬୬. ବୈଦେହୀ ଚଉତିଶା | ବେଣୁଧର ପଟ୍ଟନାୟକ |
| ୨୬୭. ବୋଲି ଚଉତିଶା | : ଅଭିମନ୍ୟୁ ସାମନ୍ତସିଂହାର |
| ୨୬୮. ବୋଲି ଚଉତିଶା | ନିଧି ରଥ |
| ୨୬୯. ବିଶ୍ୱନାଥ ଜଣାଣ ଚଉତିଶା | ଆର୍ତ୍ତ ଦାସ |
| ୨୭୦. ବୃହତ୍ ଉଦ୍ଧବ ଚଉତିଶା | ଆର୍ତ୍ତ ଦାସ |
| **(ଭ)** | |
| ୨୭୧. ଭଗବତୀ ଜଣାଣ ଚଉତିଶା | ବାଳ କବି |
| ୨୭୨. ଭଗବତୀ ଚଉତିଶା | ଦୀନବନ୍ଧୁ ଦାସ |
| ୨୭୩. ଭବାନୀ ଚଉତିଶା | ଭୁବନେଶ୍ୱର କବିଚନ୍ଦ୍ର |
| ୨୭୪. ଭଲମନ୍ଦ ଚଉତିଶା | ଦନେଇ ଦାସ |
| ୨୭୫. ଭଲମନ୍ଦ ଚଉତିଶା | ନିଧି ରଥ |
| ୨୭୬. ଭଲମନ୍ଦ ଚଉତିଶା | ବଜରୀ ରଥ |
| ୨୭୭. ଭ୍ରମର ଚଉତିଶା | : ଚନ୍ଦ୍ର ଚୂଡ଼ାମଣି ହରିଚନ୍ଦନ |
| ୨୭୮. ଭ୍ରମରବର ଚଉତିଶା | ନୃସିଂହ ଭ୍ରମରବର |
| ୨୭୯. ଭାନୁମତୀ ଚଉତିଶା | ନରହରି ବ୍ରାହ୍ମଣ |
| ୨୮୦. ଭାବାର୍ଥ ଚଉତିଶା | କାଶୀନାଥ |
| ୨୮୧. ଭୁବନେଶ୍ୱର ଲିଙ୍ଗରାଜ | |
| ୨୮୨. ମହାପ୍ରଭୁଙ୍କ ଜଣାଣ | ଗୌରାଙ୍ଗ ମହାପାତ୍ର |
| ୨୮୩. ଭୂପତିଙ୍କ ଦୃଷ୍ଟାନ୍ତର ଚଉତିଶା | ଭୂପତି ପଣ୍ଡିତ |
| **(ମ)** | |
| ୨୮୪. ମଥୁରାବିଜେ ଚଉତିଶା | ଗୋପୀନାଥ |
| ୨୮୫. ମଥୁରାବିଜେ ଚଉତିଶା | ହରି ଦାସ |
| ୨୮୬. ମଧୁପ ଚଉତିଶା | ଗୋକୁଳ |
| ୨୮୭. ମଧୁପ ଚଉତିଶା | ସାମନ୍ତ ସିଂହାର |
| ୨୮୮. ମନବୋଧ ଚଉତିଶା | ଭକ୍ତଚରଣ ଦାସ |
| ୨୮୯. ମନବୋଧ ଚଉତିଶା | କୃଷ୍ଣ ଦାସ |
| ୨୯୦. ମନଃଶାନ୍ତି ଚଉତିଶା | ନୀଳାଦ୍ରି ଦାସ |
| ୨୯୧. ମନ୍ଦାକିନୀ ଚଉତିଶା | ବିଷ୍ଣୁ ଦାସ |
| ୨୯୨. ମନ୍ଦୋଦରୀ ଚଉତିଶା | ବିଶି |
| ୨୯୩. ମନ୍ଦୋଦରୀ ଚଉତିଶା | ମଧୁସୂଦନ ଦତ୍ତ |
| ୨୯୪. ମନାଇଁ ଚଉତିଶା | ଦୟା ଦାସ |
| ୨୯୫. ମରୁତ ଚଉତିଶା | ଧନଞ୍ଜୟ ଚଉତିଶା |
| ୨୯୬. ମହାଦେବ ଜଣାଣ | ବୈଦ୍ୟନାଥ |
| ୨୯୭. ମହାବାହୁ ଜଣାଣ | କବିସୂର୍ଯ୍ୟ ବଳଦେବ |
| ୨୯୮ ମହାଲକ୍ଷ୍ମୀ ଚଉତିଶା | ଶାମବନ୍ଧୁ ପଟ୍ଟନାୟକ |
| ୨୯୯. ମହାରାଜାଙ୍କ ଚଉତିଶା | |
| ବା ଜଗବନ୍ଧୁ ଚଉତିଶା | ଅଜ୍ଞାତ |
| ୩୦୦. ମାଧବ ଚଉତିଶା | ରଘୁ ଅରକ୍ଷିତ |

| | |
|---|---|
| ୩୦୧. ମାନଭଞ୍ଜନ ଚଉତିଶା | ରଘୁ ଅରକ୍ଷିତ |
| ୩୦୨. ମାନିନୀ ଚଉତିଶା | କୃଷ୍ଣ ଦାସ |
| ୩୦୩. ମାୟାମୃଗ ଚଉତିଶା | ଅଜ୍ଞାତ |
| ୩୦୪. ମାଲ୍ୟବନ୍ତ ଚଉତିଶା | ବିପ୍ର ନାରାୟଣ |
| ୩୦୫. ମାଲ୍ୟବନ୍ତ ଚଉତିଶା | ବିଷ୍ଣୁ ଦାସ |
| ୩୦୬. ମରୁଆଫୁଲ ଚଉତିଶା | ଦ୍ୱାରକା ଦାସ |
| ୩୦୭. ମିତଣୀ ଦାଣ୍ଡଧୁଆ ଚଉତିଶା | କୃଷ୍ଣ ଦାସ |
| ୩୦୮. ମିଳନ ଚଉତିଶା | ଅର୍ଜୁନ ଦାସ |
| ୩୦୯. ମେଘଦୂତ ଚଉତିଶା | ଗୁଣସାଗର |
| ୩୧୦. ମେଘଦୂତ ଚଉତିଶା | ଗୋବର୍ଦ୍ଧନ ସିଂହ |
| ୩୧୧. ମେଷଯୁଦ୍ଧ ଚଉତିଶା | ଶ୍ୟାମଘନ |
| ୩୧୨. ମୋହନଙ୍କ ଚଉତିଶା | ମୋହନ |
| ୩୧୩. ମୋହନା ଚଉତିଶା | କବିସୂର୍ଯ୍ୟ ବଳଦେବ |

**(ଯ)**

| | |
|---|---|
| ୩୧୪. ଯମକ କଳ୍ପତରୁ ଚଉତିଶା | ରାମ ଦାସ |
| ୩୧୫. ଯମକ ରତ୍ନାକର ଚଉତିଶା | ନାରାୟଣ |
| ୩୧୬. ଯମକରାଜ ଚଉତିଶା | ଉପେନ୍ଦ୍ର ଭଞ୍ଜ |
| ୩୧୭. ଯମକରାଜ ଚଉତିଶା | ଗୋପୀ ଦାସ |
| ୩୧୮. ଯମକଶେଖର ଚଉତିଶା | ମର୍ଦ୍ଦରାଜ ନୃପତି |
| ୩୧୯. ଯାଜପୁର ଚଉତିଶା | ଗୌରାଙ୍ଗ ତ୍ରିପାଠୀ |
| ୩୨୦. ଯୋଗୀନ୍ଦ୍ର ଚଉତିଶା | ନାଥୁଆ |
| ୩୨୧. ଯୋଗୀନ୍ଦ୍ର ଦାଣ୍ଡଧୁଆ ବା ଯୋଗେନ୍ଦ୍ର ଗୀତିକା | ଭଗବାନ |

**(ର)**

| | |
|---|---|
| ୩୨୨. ରସ କଦମ୍ବ ଚଉତିଶା | ଲୋକନାଥ ଧାବର |
| ୩୨୩. ରଘୁନାଥ ବିଳାପ ଚଉତିଶା | ବାସୁ ଦାସ |
| ୩୨୪. ରଘୁବୀର ଚଉତିଶା | ବିଷ୍ଣୁ ଦାସ |
| ୩୨୫. ରସକଳା ଚଉତିଶା | ବଲ୍ଲଭ |
| ୩୨୬. ରସକଦମ୍ବ ଚଉତିଶା | ଭାରତ ଚନ୍ଦ୍ର ରାୟ |
| ୩୨୭. ରସକାହାଣୀ ଚଉତିଶା | ରାୟ ସିଂହ ଛୋଟରାୟ |
| ୩୨୮. ରସ କୁମୁଦ ଚଉତିଶା | ଧାବର ନାୟକ |
| ୩୨୯. ରସରକେଳି ଚଉତିଶା | |
| ୩୩୦. ରସବ୍ରହ୍ମ ଚଉତିଶା | ନନ୍ଦା ଅରକ୍ଷିତ |
| ୩୩୧. ରସକୂଲ୍ୟା ଚଉତିଶା | ଦାମୋଦର |
| ୩୩୨. ରସାଳ ଚଉତିଶା | ବିପ୍ର ନାରାୟଣ |
| ୩୩୩. ରାଧାକୃଷ୍ଣ ଚଉତିଶା | ଦୀନକୃଷ୍ଣ ଦାସ |
| ୩୩୪. ରାଧାକୃଷ୍ଣ ମିଳନ ଚଉତିଶା | ସୁଦର୍ଶନ ପଟ୍ଟନାୟକ |
| ୩୩୫. ରାଧାଦର୍ଶନ ଚଉତିଶା | ଦୀନକୃଷ୍ଣ ଦାସ |
| ୩୩୬ ରାଧାବଲ୍ଲଭ ଚଉତିଶା | ରଘୁନାଥ ମହାପାତ୍ର |
| ୩୩୭. ରାଧାବିରହ ଚଉତିଶା | କେଶବ |
| ୩୩୮. ରାଧାବିରହ ଚଉତିଶା | : ଶ୍ରୀମତୀ ପାର୍ବତୀ ବୈଷ୍ଣବୀ |
| ୩୩୯ ରାଧାବିଳାସ ଚଉତିଶା | ଭଗବାନ ପଟ୍ଟନାୟକ |
| ୩୪୦. ରାଧା ମାଧବ ଚଉତିଶା | ମଦନ |
| ୩୪୧. ରାଧାମୋହନ ଚଉତିଶା | ନିତ୍ୟାନନ୍ଦ |
| ୩୪୨. ରାମକାରୁଣ୍ୟ ଚଉତିଶା | ହରି ଦାସ |
| ୩୪୩. ରାମକୃଷ୍ଣ ହରି ଚଉତିଶା | : ନବ କିଶୋର ଜ୍ୟୋତିଷ ଚୂଡ଼ାମଣି |
| ୩୪୪. ରାମକ୍ରୋଧ ଚଉତିଶା | ବିଶି |
| ୩୪୫. ରାମଚନ୍ଦ୍ର ଜଣାଣ ଚଉତିଶା | ଭୋବନି |
| ୩୪୬. ରାମରୋଦନ ଚଉତିଶା | ରଘୁନାଥ ମହାପାତ୍ର |
| ୩୪୭. ରୁକ୍ମିଣୀ ଚଉତିଶା | ନନ୍ଦାବାଈ |
| ୩୪୮ ଋତୁବିରହ ଚଉତିଶା | ବୈଶ୍ୟ ନାରାୟଣ |

**(ଲ)**

| | |
|---|---|
| ୩୪୯. ଲେଖା ଚଉତିଶା | : ମଦନ ମୋହନ ପଟ୍ଟନାୟକ |
| ୩୫୦. ଲୋକନାଥ ଜଣାଣ ଚଉତିଶା | : ଶ୍ରଦ୍ଧାମୟୀ ଦେବୀ |
| ୩୫୧. ଲୋକନାଥ ଜଣାଣ ଚଉତିଶା | ଚିନ୍ତାମଣି ପ୍ରହରାଜ |
| ୩୫୨. ଲୋକନାଥ ଦାସଙ୍କ ଚଉତିଶା | ଲୋକନାଥ |

**(ଶ)**

| | |
|---|---|
| ୩୫୩. ଶଙ୍କରାଭରଣ ଜଣାଣ ଚଉତିଶା | କବିସୂର୍ଯ୍ୟ ବଳଦେବ |
| ୩୫୪. ଶକୁନ୍ତଳା ଚଉତିଶା | ରଘୁ ଅରକ୍ଷିତ |
| ୩୫୫. ଶରୀରଭେଦ ଚଉତିଶା | ଅଚ୍ୟୁତାନନ୍ଦ ଦାସ |
| ୩୫୬. ଶରୀରଭେଦ ଚଉତିଶା | ଦ୍ୱାରକା ଦାସ |
| ୩୫୭. ଶରୀରଭେଦ ଚଉତିଶା | ବଲ୍ଲଭ ଦାସ |
| ୩୫୮. ଶରୀରଭେଦ ଚଉତିଶା | ରାମ ଦାସ |
| ୩୫୯. ଶରୀର ଭେଦ ଚଉତିଶା | ସୁବୁଦ୍ଧି ଗୋସାଇଁ |
| ୩୬୦. ଶାଗ ଚଉତିଶା | ବୀର ସିଂହ |
| ୩୬୧. ଶାଶୁ ବୋହୂ ଛଟା ଚଉତିଶା | ନରହରି |
| ୩୬୨. ଶିବ ଆର୍ତ୍ତତ୍ରାଣ ଚଉତିଶା | କପିଳେଶ୍ୱର ବିଦ୍ୟାଭୂଷଣ |
| ୩୬୩. ଶିଶୁବେଦ ଚଉତିଶା | ଅଜ୍ଞାତ |
| ୩୬୪. ଶ୍ରୀ ଅଦ୍ୱୈତ ଜଣାଣ ଚଉତିଶା : | ବଳରାମ ବହିଦାର |
| ୩୬୫. ଶଶିମୁଖୀ ଚଉତିଶା | ଗୋପାଳ ମହାକ୍ଷେତ୍ରୀ |
| ୩୬୬. ଶ୍ରୀକୃଷ୍ଣଙ୍କ ପାଠପଢ଼ା | ହରି ଦାସ |
| ୩୬୭. ଶ୍ରୀ ଗୌର ବିଷ୍ଣୁପ୍ରିୟା ଚଉତିଶା : | ବଳରାମ ବହିଦାର |
| ୩୬୮ ଶ୍ରୀ ଦୁର୍ଗାଜଣାଣ ଚଉତିଶା | କାର୍ତ୍ତିକ ଚନ୍ଦ୍ର ନନ୍ଦ |
| ୩୬୯. ଶ୍ରୀ ରାଧିକା ସ୍ମରଣ ଚଉତିଶା | ଦୀନକୃଷ୍ଣ ଦାସ |
| ୩୭୦. ଶ୍ରୀ ରାମଚନ୍ଦ୍ରଙ୍କ ବନବିଜେ ଚଉତିଶା | କାର୍ତ୍ତିକ ଚନ୍ଦ୍ର |
| ୩୭୧. ଶ୍ରୀ ରାମଚନ୍ଦ୍ର ନନ୍ଦ ଚଉତିଶା | ରାମ ବିହାରୀ ସାହୁ |
| ୩୭୨. ଶ୍ରୀ ବ୍ରଜରାଜଙ୍କ ଜଣାଣ ଚଉତିଶା | : ପଦ୍ମନାଭ ଦେବ |
| ୩୭୩. ଶ୍ରୀ ବୋଲି ଚଉତିଶା | କହ୍ନାଇ |
| ୩୭୪. ଶ୍ରୀ ଲକ୍ଷ୍ମୀନାରାୟଣ ଚଉତିଶା | ଜଗନ୍ନେଶ୍ୱର ହୋତା |
| ୩୭୫. ଶୃଙ୍ଖଳା ଯମକ ଚଉତିଶା | ବାଣପୁର ରାଜା |

| | |
|---|---|
| ୩୭୬. ଶୃଙ୍ଖଳାବନ୍ଧ ଚଉତିଶା | ହରିଶରଣ ଭଞ୍ଜ |
| ୩୭୭. ଶ୍ରୀ ହରିହର ଚଉତିଶା | ଭୁବନେଶ୍ୱର ମିଶ୍ର କବିବଲ୍ଲଭ |
| **(ଷ)** | |
| ୩୭୮. ଷଟ୍‌ସାଗର ଚଉତିଶା | ବିଷ୍ଣୁ ଦାସ |
| ୩୭୯. ସଖୀଚାତୁରୀ ଚଉତିଶା | ବିଷ୍ଣୁ ଦାସ |
| **(ସ)** | |
| ୩୮୦. ସଜନୀ ଚଉତିଶା | କାଶୀନାଥ କର |
| ୩୮୧. ସଜନୀ ଚଉତିଶା | କୃପାସିନ୍ଧୁ ପଟ୍ଟନାୟକ |
| ୩୮୨. ସଙ୍ଗିନୀ ଚଉତିଶା | ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା |
| ୩୮୩. ସନ୍ଦେଶ ଚଉତିଶା (ବିଷ୍ଣୁ ଦାସଙ୍କ ଚଉତିଶା) | ବିଷ୍ଣୁ ଦାସ |
| ୩୮୪. ସପ୍ତପଦୀ ଚଉତିଶା | ବଳଦେବ ଦାସ ନାଗା |
| ୩୮୫. ସପ୍ତଦ୍ୱୀପ ବର୍ଣ୍ଣନ ଚଉତିଶା | ବଳଦେବ ଦାସ ନାଗା |
| ୩୮୬. ସପ୍ତରାଗ ଚଉତିଶା | କ୍ଷତ୍ରିବର ଭଞ୍ଜ |
| ୩୮୭. ସପ୍ତରାଗୀ ଭଜନ ଚଉତିଶା | କୁଞ୍ଜବିହାରୀ ବହିଦାର |
| ୩୮୮. ସଂସାର ମନବୋଧ ଚଉତିଶା | ଜଗନ୍ନାଥ ଦାସ |
| ୩୮୯. ସାନ କନଡ଼ା ଚଉତିଶା | ଦନାଇ ଦାସ |
| ୩୯୦. ସାରଙ୍ଗଦୂତ ଚଉତିଶା | କୃପାସିନ୍ଧୁ ସୁମନ୍ତ |
| ୩୯୧. ସାରଙ୍ଗସୂଦନ ଚଉତିଶା | ସିନ୍ଧୁ ଦାସ |
| ୩୯୨. ସଖୀ ଚାତୁରୀ ଚଉତିଶା | କୃପାସିନ୍ଧୁ |
| ୩୯୩. ସ୍ନାନ ଚଉତିଶା | ସନ୍ଥ ନିରଞ୍ଜନ ଦାସ |
| ୩୯୪. ସ୍ନାନ ସ୍ମରଣ ଚଉତିଶା | ଦୀନକୃଷ୍ଣ ଦାସ |
| ୩୯୫. ସ୍ନାନୋତ୍ସବ ଚଉତିଶା | ଦୀନକୃଷ୍ଣ |
| ୩୯୬. ସୀତାକାରୁଣ୍ୟ ଚଉତିଶା | ରାମାନନ୍ଦ |
| ୩୯୭. ସୀତାନୁଚିନ୍ତା ଚଉତିଶା | ମଙ୍ଗରାଜ |
| ୩୯୮. ସୀତା ବିଚ୍ଛେଦ ଚଉତିଶା | ପରମାନନ୍ଦ |
| ୩୯୯. ସୀତା ସ୍ମରଣ ଚଉତିଶା | ସତ୍ୟବାଦୀ |
| ୪୦୦. ସୁଜନ ଚଉତିଶା | ଭାଗବତ ପଣ୍ଡା |
| ୪୦୧. ସୁନ୍ଦରୀ ଚଉତିଶା | ନରେନ୍ଦ୍ର ସୂନୁ |
| ୪୦୨. ସୁନ୍ଦରୀ ଚଉତିଶା | ସୋମନାଥ ସିଂହ ଜଗଦ୍ଦେବ |
| ୪୦୩. ସୁନ୍ଦରୀ ଚଉତିଶା | ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ |
| ୪୦୪. ସୁବୁଦ୍ଧି ଗୋସାଇଁଙ୍କ ଚଉତିଶା | ସୁବୁଦ୍ଧି ଗୋସାଇଁ |
| ୪୦୫. ସୁମନ ଚଉତିଶା | ରାଧାକୃଷ୍ଣ ବିହାରୀ |
| ୪୦୬. ସୋମେଶ୍ୱର ଜଣାଣ ଚଉତିଶା : | ଅମର ସିଂହ |
| **(ହ)** | |
| ୪୦୭. ହଂସ ଦୂତ ଚଉତିଶା | ଶ୍ୟାମଘନ |
| ୪୦୮. ହଂସ ଦୂତ ଚଉତିଶା | ଶିଶୁ ଯଦୁ ଦାସ |
| ୪୦୯. ହଂସ ଦୂତ ଚଉତିଶା | ଅଭିମନ୍ୟୁ ପଟ୍ଟନାୟକ |
| ୪୧୦. ହନୁମାନ ଚଉତିଶା | ରସାନନ୍ଦ |
| ୪୧୧. ହନୁମାନ ଚଉତିଶା | ରାମଚନ୍ଦ୍ର |
| ୪୧୨. ହରିନାମ କୀର୍ତ୍ତନ ଚଉତିଶା | ଗୌରଚରଣ ଅଧିକାରୀ |
| ୪୧୩. ହରିଅର୍ଜ୍ଜୁନ ଚଉତିଶା | ଜୟି |
| **(କ୍ଷ)** | |
| ୪୧୪. କ୍ଷମାନିଧି ଚଉତିଶା | ବ୍ରଜରାଜ ସିଂହ |
| ୪୧୫. କ୍ଷମାନିଧି ଓଲଟ ଚଉତିଶା | କବି ସନା |
| ୪୧୬. କ୍ଷିତି ଚଉତିଶା | ଭଉଁରୀ ଦାସ |
| ୪୧୭. "କ୍ଷିତି ମଣ୍ଡଳେ ଦେହ ବହି" | ଭୀମ ଭୋଇ |
| ୪୧୮ "କ୍ଷିତି ମଧେ ପାପ ଭାରା | |
| ୪୧୯. ହୋଇଲାଣି ଯେତେ" | ଭୀମ ଭୋଇ |
| ୪୨୦. "କ୍ଷୀର ସିନ୍ଧୁ ବାସୀ ଯେହି" | ଭୀମ ଭୋଇ |
| ୪୨୧. କ୍ଷେତ୍ର ଚଉତିଶା | ବଳଭଦ୍ର |
| ୪୨୨. କ୍ଷେତ୍ର ବିରହ ଚଉତିଶା | ବିଷ୍ଣୁ ଦାସ |

●

